# ମାଂକଡ଼ ଓ ଅନ୍ୟାନ୍ୟ ଗଳ୍ପ

ସଚ୍ଚିଦାନଂଦ ରାଉତରାୟ

ଦିଗଂତ ପ୍ରକାଶନୀ
କଟକ-୭୫୩,୦୦୧

# ମାଂକଡ଼ ଓ ଅନ୍ୟାନ୍ୟ ଗଳ୍ପ

# The Monkey and the Other Short Stories

ପ୍ରଣେତା : ସଚ୍ଚିଦାନଂଦ ରାଉତରାୟ

**Writer : Satchidananda Routrai**



ପ୍ରଥମ ସଂସ୍କରଣ : ଅକ୍ଟୋବର, ୧୯୮୪

ପ୍ରକାଶକ : ବସଂତ ପ୍ରକାଶିନୀ
ମିସନ୍ ରୋଡ୍, କଟକ-୭୫୩୦୦୧

ମୁଦ୍ରକ : ମା' କାଳୀ ପ୍ରେସ୍
ଶେଖବଜାର, କଟକ—୭୫୩୦୦୮

ମୂଲ୍ୟ : ଟ ୧୨-୦୦

**Rs. 12-00**

# ପୂର୍ବାଭାସ

'ମାଂକଡ଼ ଓ ଅନ୍ୟାନ୍ୟ ଗଳ୍ପ' ନାମରେ ମୋର ଏହି କ୍ଷୁଦ୍ରଗଳ୍ପ ସଂକଳନଟି ପ୍ରକାଶ ପାଉଛି । ଏଥିରେ ମୋର ଏଗାରଟି ଗଳ୍ପ ସ୍ଥାନ ପାଇଛି । ଗଳ୍ପ ଗୁଡ଼ିକର ପାଂଚଟି ୧୯୮୩ ସାଲ ମଧ୍ୟରେ ରଚିତ । ଏଥିରୁ କେତୋଟି ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ ହୋଇଥିଲା ଯଥା 'ଦିଗନ୍ତ', 'ଆସନ୍ତା କାଲି' 'ଗଳ୍ପ' 'ଝଂକାର' ପ୍ରଭୃତି । ସେଥି ସହିତ 'ଆଧୁନିକ' ପତ୍ରିକାରେ ୧୯୫୬ ସାଲରେ ପ୍ରକାଶିତ ମୋର ଏକ ତରୁଣ ବୟସର ଗଳ୍ପ ମଧ୍ୟ ସନ୍ନିବିଷ୍ଟ କରାଯାଇଛି ।

ଏହି ଗଳ୍ପ ଗୁଡ଼ିକରେ ବ୍ୟକ୍ତିମାନସ ତଥା ସମାଜମାନସର ପ୍ରତିଫଳନ ସ୍ୱାଭାବିକ । ପ୍ରେମ, ପ୍ରକୃତି, ସାମାଜିକ ସମସ୍ୟା, ଦାର୍ଶନିକତା, ଇତିହାସ, ବ୍ୟଂଗ, ମନସ୍ତାତ୍ତ୍ୱିକ ବିଶ୍ଳେଷଣ ଏବଂ ଅବଚେତନର ଉଦ୍‌ଘାଟନ ଗଳ୍ପ ଗୁଡ଼ିକର ମୁଖ୍ୟ ଆଧେୟ କୁହାଯାଇପାରେ ।

ଫକୀରମୋହନୋତ୍ତର ଗଳ୍ପ ସାହିତ୍ୟରେ ଓଡ଼ିଆ ମାନସିକତାର ବୈଚିତ୍ର୍ୟ ଓ ଅଭିଜ୍ଞତା ଏବଂ ଓଡ଼ିଆ ପ୍ରାଣର ବର୍ଣ୍ଣିଳ ଅଭିବ୍ୟକ୍ତି ଓ ତାର ସାମାଜିକ ଉପଲବ୍ଧି ରୂପାୟିତ ହୋଇଛି । ସେହି ପୂର୍ବସୂରୀମାନେ ଓଡ଼ିଆ ଗଳ୍ପ ସାହିତ୍ୟକୁ ନାନାଭାବରେ ସମୃଦ୍ଧ କରିଯାଇଛନ୍ତି । ସେମାନଙ୍କର ସାର୍ଥକ ଅବଦାନ ଅବିସ୍ମରଣୀୟ ।

ଦ୍ୱିତୀୟ ମହାଯୁଦ୍ଧୋତ୍ତର ସମାଜ, ସାହିତ୍ୟଚେତନା ଉଗ୍ର, ବିକ୍ଷୁବ୍ଧ ଓ ଜଟିଳ । ଏହି ବିପର୍ଯ୍ୟସ୍ତ ଯୁଗ ସଂଗରେ ଯେଉଁମାନଙ୍କର ପ୍ରତ୍ୟକ୍ଷ ପରିଚୟ ଘଟିଛି ସେମାନଙ୍କ ତୁଳନାରେ ଯେଉଁମାନଙ୍କର ପରିଚୟ ଘଟି ନାହିଁ ସେମାନଙ୍କ ସଂଖ୍ୟା ବୋଧହୁଏ ଆଜିର ପାଠକସମାଜରେ ଅଧିକ । ସ୍ୱାଧୀନତା ସଂଗ୍ରାମ, ଗଣ ଆଂଦୋଳନ, ଗଡ଼ଜାତ ପ୍ରଜା ଆଂଦୋଳନ ଓ ମିଶ୍ରଣ, ମହାଯୁଦ୍ଧର ବିଭୀଷିକା, ଦେଶବିଭାଜନ ଓ ତାହାର ମାରାତ୍ମକ ପରିଣାମ, ଦୁର୍ଭିକ୍ଷ, ଜୀବନରେ ମୂଲ୍ୟବୋଧର ଭ୍ରଷ୍ଟତା ଓ ନୀତିବିନାଶ, ମୂଲ୍ୟବୃଦ୍ଧି, କଂଟ୍ରୋଲ ଓ ଲାଇସେନସ, କଳାବଜାର, ସାଂପ୍ରଦାୟିକ ଦଂଗା, ଅଭିଜାତ ଓ ଭୂମ୍ୟଧିକାରୀ ଶ୍ରେଣୀର ପ୍ରାଧାନ୍ୟ ଲୋପ ଏବଂ ଏକ ନୂତନ ଉଚ୍ଚ ମଧ୍ୟବିତ୍ତ ଧନିକ ଶ୍ରେଣୀର ଅଭ୍ୟୁତ୍‌ଥାନ ଏ ସବୁର ମୁଦ୍ରାଂକ ଜୀବନ ଓ ସାହିତ୍ୟରେ ସ୍ପଷ୍ଟ । ସବୁଜକାଳୀନ ପ୍ରେମ ଓ ରୋମାନସ, ବୋହେମିଆନବାଦ ଏବଂ ରୋମାଂଟିକତା ବା ଔତ୍ସୁକ୍ୟବାଦ କ୍ରମେ ସାହିତ୍ୟରୁ ଅପସରି ଯାଇଚି ଏବଂ ତା ସ୍ଥାନରେ ବାସ୍ତବବୋଧ, ସମାଜଚେତନା ଏବଂ

ପରିବାରବକୁ ନେଇ ପରୀକ୍ଷା-ନିରୀକ୍ଷା ଏବଂ ଅବଚେତନର ବୀକ୍ଷଣ ଇତ୍ୟାଦି ଗଳ୍ପ ଉପନ୍ୟାସରେ ପ୍ରାଧାନ୍ୟ ଲାଭ କରିଚ । ପ୍ରଚଳିତ ବିଧିବ୍ୟବସ୍ଥା ଓ ମୂଲ୍ୟବୋଧ ସହିତ ନୂତନ ପ୍ରଜନ୍ମର ଗଳ୍ପକାରମାନଙ୍କର ସଂଘର୍ଷ ଘଟିଛି ଏବଂ ତାର ରୂପାୟନ ସାଂପ୍ରତିକ ଗଳ୍ପସାହିତ୍ୟରେ ସ୍ପଷ୍ଟ ।

ଦ୍ୱିତୀୟରେ ଜୀବନରେ ଯେପରି ସାହିତ୍ୟରେ ମଧ୍ୟ ସେପରି ଯେଉଁ ଦ୍ୱାନ୍ଦ୍ୱିକ ପରିବର୍ତ୍ତନ ସାଧିତ ହୋଇ ଚାଲିଚି ସେ ସଂବଂଧରେ ଉଭୟ ଲେଖକ ଓ ପାଠକଶ୍ରେଣୀ କ୍ରମେ ସଚେତନ ହୋଇ ଉଠୁଛଂତି । ଫଳରେ ସାହିତ୍ୟ ପୁରୁଣା ଦୃଷ୍ଟି ଓ ଆକୃତି ଛାଡ଼ି ନୂତନ ଆଧାର ଓ ଆଧେୟ ଅର୍ଥାତ୍ ଆଂଗିକ ଓ ଆତ୍ମିକ ବାଛି ନେଇଛି ।

ସାଂପ୍ରତିକ କାଳର ଲେଖକ ଲେଖିକାମାନେ ଲେଖା ଆରଂଭ କଲାବେଳକୁ ସମାଜରେ ତଥା ଜୀବନରେ ବହୁ ପରିବର୍ତ୍ତନ ଘଟି ଯାଇଚି ଯାହା ସଂବଂଧରେ ସେମାନଂକର କୌଣସି ଅନୁଭୂତି କିଂବା ସାମ୍ନାସାମ୍ନି ସ୍ମୃତି ନାହିଁ । ଯୌଥ-ଜୀବନ ଯାହା ଥିଲା ସମାଜର ମୂଳଭିତ୍ତି ତାହା ପ୍ରାୟ ଭାଂଗି ପଡ଼ିଚି ଏବଂ ସରଳ ପଲ୍ଲୀସମାଜରେ ବହୁ କାଟଛାଂଟ ଓ ଅଦଳ ବଦଳ ଦେଖା ଦେଇଛି । ଦେଶରେ ଦ୍ରୁତ ନଗରୀକରଣ ( Urbanisation ) ଏବଂ ଯାଂତ୍ରୀକରଣର (industrialisation) ସୁଅ ଛୁଟିଛି । ପୁରୁଣା ସମାଜ-ସଂପର୍କ ଓ ମୂଲ୍ୟବୋଧ ସ୍ଥାନରେ ନୂଆ ସଂପର୍କ ଓ ଦୃଷ୍ଟିଭଂଗୀ ଜୀବନରେ ଓ ଜାତୀୟ ଚେତନା ଓ ସାହିତ୍ୟରେ ବହୁମୁଖୀ ପରିବର୍ତ୍ତନ ଘଟାଇଚି—ଯାହାର ଆକଳନ ଓ ରୂପାୟନ ସମସାମୟିକ ଗଳ୍ପ ସାହିତ୍ୟରେ ବେଶ୍ ସ୍ପଷ୍ଟ । ଖାଲି ଚେତନା ନୁହେଁ, ନାରୀ-ପୁରୁଷର ଯୌନ ସଂପର୍କରେ ମଧ୍ୟ ଦେଖା ଦେଇଛି ନୂତନ ଦୃଷ୍ଟିଭଂଗୀ ଯାହା ପୂର୍ବପ୍ରଚଳିତ ଦୃଷ୍ଟିଭଂଗୀଠାରୁ ସ୍ୱାଧୀନ, ସ୍ୱତଂତ୍ର ଓ ସ୍ୱଚ୍ଛ, ଯଦିଚ ପ୍ରେମର ମୌଳ ଆବେଗ ଗୁଡ଼ିକ ପ୍ରାୟ ଠିକ୍ ଅଛି । ନୂତନ ବଂଶଧରଗଣ 'ଚୈତ୍ରୀ ବଣରେ ବାସ କରିବା ପାଇଁ ତିଆରି ହୋଇଲେ ଅନେକ ସମୟରେ ଏକଜୁଟ ହେବା ପାଇଁ ମଧ୍ୟ ଚେଷ୍ଟା କରୁଛଂତି ବା ଏକଜୁଟ ହେବାର ଛଳନା କରୁଛଂତି—ଯଦିଚ ପ୍ରକୃତରେ ସେମାନେ ଅଧିକ ନିଃସଂଗ ହିଁ ଦେଖା ଯାଉଛଂତି । ସେମାନେ ସତରେ ଏହାର ପ୍ରତିକାର ଖୋଜୁଛଂତି କିଂବା ଭୋଗୁଛଂତି ମ୍ଲାୟୁକ୍ଷୟରେ ।' ଏହା ଯେ କେବଳ ଓଡ଼ିଆ ସାହିତ୍ୟରେ ଘଟିଚି ତାହା ନୁହେଁ ଭାରତରେ ସବୁ ସାହିତ୍ୟରେ ସେଇ ଅନୁରୂପ ଅବସ୍ଥା ଦେଖାଦେଇଚି ।

ନୂତନ ଗଳ୍ପରେ ପ୍ରାଚୀନ ସଂଗରେ ଆଧୁନିକର ବ୍ୟବଧାନ କେବଳ ମାନସିକତାରେ ନୁହେଁ, ଭାଷା ଓ ଆଂଗିକରେ ମଧ୍ୟ । କେବଳ ଜୀବନ-ଦୃଷ୍ଟିରେ ନୁହେଁ ଜୀବନର ନାନା ଉପକରଣର ବ୍ୟବହାରରେ ମଧ୍ୟ ସୁସ୍ପଷ୍ଟ ।

ଏ ବହିରେ ସଂକଳିତ ଗଳ୍ପ ଗୁଡ଼ିକରେ ପୁରାତନ ଓ ନୂତନ ପ୍ରଜନ୍ମର ଗଳ୍ପକାର-ମାନଙ୍କ ମଧ୍ୟରେ ଥିବା ବ୍ୟବଧାନ ଓ ସାମଂଜସ୍ୟର ଢଗ ପ୍ରତିଫଳିତ ହୋଇଛି । ସାଂପ୍ରତିକ ଓଡ଼ିଆ ଗାଳ୍ପିକମାନେ ଯେ ଚେତନାର ବିଚ୍ଛିନ୍ନତାରେ ଭୋଗୁଛନ୍ତି ଏହା ସେମାନଙ୍କର ଗଳ୍ପ ଗୁଡ଼ିକରେ ହିଁ ଅଭ୍ରାଂତ ଅକ୍ଷରରେ ଲିପିବଦ୍ଧ । ସେମାନେ ସମାଜ-ଚେତନାର ମହାସ୍ରୋତରୁ ନିଜର ଅଜ୍ଞାତସାରରେ ବିଚ୍ଛିନ୍ନ ହୋଇ ପଡ଼ିଛନ୍ତି ବୋଲି ବୋଧହୁଏ । ଜୀବନର ବିଭିନ୍ନ ସମସ୍ୟା ଓ ଆହ୍ୱାନରୁ ମୁକୁଳିବାର ଐତିହାସିକ ପଂଥାର ସଂଧାନ ସେମାନେ ଏ ପର୍ଯ୍ୟଂତ ମଧ୍ୟ ପାଇ ପାରି ନାହାଂନ୍ତି । ଫଳରେ ଦେଖା ଦେଇଛି ଖଂଡିତ ଚେତନା, ବ୍ୟକ୍ତିତ୍ୱର ବିଭାଜନ ଏବଂ କାବ୍ୟଚେତନାରେ ବିଚ୍ଛେଦ । ଅଧିକାଂଶ ଗାଳ୍ପିକ ହିଁ ଆତ୍ମ-ଅପଗତିର ଶିକାର ହୋଇ ପଡ଼ିଛନ୍ତି । ମୁଁ ନିଜେ ମଧ୍ୟ ସେଥିରୁ ମୁକ୍ତ ବୋଲି କହି ପାରିବି ନାହିଁ । ତଥାପି ଏଇ ଗଳ୍ପ ଗୁଡ଼ିକରେ ଜୀବନର ସ୍ୱବିରୋଧ ଓ ଦ୍ୱାଂଦ୍ୱିକ ପରିବର୍ତ୍ତନ ସଂଗେ ସଂହତି ଓ ସାମାଜିକ ଅବବୋଧର ସମନ୍ୱୟ ଘଟାଇବା ପାଇଁ ସଚେତନ ଚେଷ୍ଟା କରାଯାଇଛି ।

ଆଂଚଳିକ ସ୍ତରରେ ସ୍ଥିତିବାଦର ବିଫଳତା ଗଳ୍ପ ଉପନ୍ୟାସକୁ ପ୍ରଚଂଡ ବାଘାତ ଦେଇଛି । ସ୍ଥିତିବାଦୀ ଦୃଷ୍ଟିଭଂଗୀ ଓ ମାନସିକତା କ୍ରମଶ ଜୀବନର ବ୍ୟାପକ ପରିସରରୁ ଆତ୍ମ-ନିର୍ବାସିତ ହୋଇ ବ୍ୟକ୍ତିକ ଜଗତରେ ଅବରୁଦ୍ଧ ହୋଇ ପଡ଼ିଛି । ଜୀବନକୁ ନୂତନ ଭାବରେ ଦେଖିବାର ଉତ୍ସାହ ସବୁବେଳେ ଭୂୟୋବିକାଶର ସହାୟକ ଓ ପରିପୂରକ । ମାତ୍ର ସ୍ଥିତିବାଦୀ ଜୀବନଦର୍ଶନ କ୍ରମଶ ସ୍ଥିତାବସ୍ଥାର ତାଡ଼ନରେ, ନାନା ପ୍ରକାର ବିକୃତିର ଶିକାର ହୋଇ ପଡ଼ିଛି । ଆତ୍ମବିଖଂଡନ ଏହାର ଅନିବାର୍ଯ୍ୟ ପରିଣାମ । ଏହାର ବିକଳ୍ପ ପଥ ଏ ପର୍ଯ୍ୟଂତ ସ୍ଥିତିବାଦ ଖୋଜି ପାଇ ନାହିଁ । ତାର କାରଣ ଏହାର ସାମାଜିକ ଉପଲବ୍ଧି କ୍ଷୀଣ ଓ ଦୁର୍ବଳ । କେବଳ ବ୍ୟକ୍ତିସତ୍ତା ଜୀବନର ପରିପୂର୍ଣ୍ଣତା ଆଣି ନ ପାରେ । ବ୍ୟକ୍ତିସତ୍ତାର ପରିପୂର୍ଣ୍ଣ ଅଭିବ୍ୟକ୍ତି ସମାଜଚେତନାର ମହାସ୍ରୋତ ସହିତ ସମନ୍ୱିତ ଓ ଛଂଦୋବଦ୍ଧ ହୋଇ ହିଁ ସଂଭବ ହୋଇପାରେ । ଅନ୍ୟଥା ତାହା ଯେତେ ଧୀ-ସଂପନ୍ନ ମନନଶୀଳ ଓ ମେଧାବୀ (witty) ହେଲେ ମଧ୍ୟ ଜୀବନର ସାର୍ବିକ ପରିସରରୁ ବିଚ୍ଛିନ୍ନ ହୋଇ ପଡ଼ିବ ।

ବ୍ୟକ୍ତି ତଥା ସମାଜଜୀବନରେ ଯେଉଁ ଅଂତଃଶୀଳ ବିରୋଧ-ମିଳନର ପ୍ରକ୍ରିୟା ବା ଦ୍ୱାଂଦ୍ୱିକ ବିବର୍ତ୍ତନ ପ୍ରତି ମୁହୂର୍ତ୍ତରେ ଚାଲିଛି ସେ ସଂବଂଧରେ ସ୍ଥିତିବାଦର ଧାରଣା ଓ ଅବବୋଧ କ୍ଷୀଣ । ତାହା ତାକୁ ବେଶୀ ଦୂର ଆଗେଇ ନେଇ ଯାଇ ପାରି ନାହିଁ ।

---

* "ଏକୋଇଶଟି ବାଂଗଲା ଗଳ୍ପ' ସଂକଳନର ଭୂମିକା ଦ୍ରଷ୍ଟବ୍ୟ । ଏହି ସଂକଳନର ସଂପାଦକ କଲିକତା ବିଶ୍ୱବିଦ୍ୟାଳୟର ପ୍ରଫେସର ଅରୁଣକୁମାର ମୁଖୋପାଧ୍ୟାୟ । ଏହାର ଓଡ଼ିଆ ଭାଷାଂତର ଏହି ଲେଖକ କରିଛି । ଉଭୟ ବହିର ପ୍ରକାଶକ ନ୍ୟାସନାଲ ବୁକ୍ ଟ୍ରଷ୍ଟ ଅଫ ଇଂଡିଆ ।

ଆଧୁନିକ ଓଡ଼ିଆ ଶ୍ରେଷ୍ଠ ଗଳ୍ପରେ ଅନେକ ସମୟରେ ବିକୃତିଟା ହିଁ ବେଶୀ ଆଖିରେ ପଡ଼େ ଯଦିଚ ବିକୃତି ମଧ୍ୟ ଜୀବନସତ୍ୟ । କାରଣ ଏହା ଜୀବନ ବାହାରେ ଘଟେ ନାହିଁ । ମାତ୍ର ବିକୃତିକୁ ବିକୃତ ଭାବରେ ନ ଦେଖାଇ ପ୍ରକୃତ ଭାବରେ ଚିତ୍ରଣ କଲେ ହିଁ କେଂନ୍ଦ୍ରଚ୍ୟୁତିର ବିପଦ ଦେଖାଦିଏ ।

ଆଧୁନିକ ଗଳ୍ପ ପ୍ରାୟ ଗଳ୍ପହୀନ ଏବଂ କେତେକାଂଶରେ କାବ୍ୟଧର୍ମୀ । ଆଧୁନିକ ଗଳ୍ପକୁ ପ୍ରତୀକ ମଧ୍ୟ କୁହାଯାଇପାରେ । ପ୍ରତ୍ୟେକଟି ଗଳ୍ପ ଗୋଟିଏ ଗୋଟିଏ ପ୍ରତୀକରେ ପରିଣତ ହୋଇ ପାରିଲେହିଁ ସାର୍ଥକତା ଲାଭକରେ ।

ମୋର 'ମଶାଣିର ଫୁଲ' ଓ 'ମାଟିର ତାଜ୍' ପ୍ରଭୃତି ଗଳ୍ପମାଳା ପରେ ୧୯୬୭-୮୩ ଦଶକ ଦ୍ୱୟରେ ଲେଖାଯାଇଥିବା ଏହି ଗଳ୍ପଗୁଡ଼ିକ ସଂବଂଧରେ ପାଠକ-ପ୍ରତ୍ୟୁତ୍ତର (readers-response) ଲକ୍ଷ୍ୟ କରିବାର ବାସନା ରହିଲା ।

ଏହି ଗଳ୍ପଗୁଡ଼ିକ ପାଠକ ଏବଂ ସୁଧୀ ସମାଜରେ ସମାଦୃତ ହେଲେ ମୁଁ ଶ୍ରମ ସାର୍ଥକ ମନେ କରିବି ।

ସଚ୍ଚିଦାନଂଦ ରାଉତରାୟ

କଟକ-୧

୨୧ । ୧୦ । ୧୯୮୩

# ॥ ସୂଚୀପତ୍ର ॥





● Paper used in this book has been made available by Government of India at concessional rate.

# ମାଂକଡ଼

ସଦ୍ୟ ଅବସରପ୍ରାପ୍ତ ଡେପୁଟୀ କଲେକ୍ଟର ପଦ୍ମଚରଣ ବାବୁ ଆଜି ଗାଁ ଅଡ଼େ ମୁହାଁଇଛଂତି । ଦୀର୍ଘ ପଚିଶିତିରିଶ ବର୍ଷ ଧରି ତାଂକର ଗାଁ ସଂଗେ ପ୍ରାୟ ସମ୍ପର୍କ ନାହିଁ କହିଲେ ଚଳେ । ଅବଶ୍ୟ ମଝିରେ ମଝିରେ ସେ ଗାଆଁକୁ ଯାଆଂତି ନାହିଁ ତା ନୁହେଁ । ତେବେ ସେ ଯିବା ନଯିବା ସଂଗେ ସମାନ । କୁଣିଆଂକ ଭଳି ଯାଇ ଦିନେ ଅଧେ ରହି ଭାଇ-ବିରାଦର, ପୁରୁଣା ଝିଆଣ୍ଟିଙ୍କ ବାହାପୁଆଣିରେ ଯୋଗଦେଇ ଫେରି ଆସଂତି । ଖୁବ୍ କ୍ୱଚିତ୍ ସ୍ତ୍ରୀପରିବାର ନେଇ ଯାଇଛଂତି । ସାହିର କାହାକୁ ଭେଟିବାକୁ କି କାହା ସଂଗେ ମନଖୋଲି କଥା ପଦେ ହେବାକୁ ବି ଅବସର ନଥାଏ । ଉପରେ ଉପରେ ଯାଇ ଉପରେ ଉପରେ ଚାଲି ଆସଂତି ।

ପାଂଚ ଛଅ ବର୍ଷ ତଳେ ରାଜଧାନୀରେ ସବ୍‌ଡେପୁଟୀ କାମ କରୁଥିବା-ବେଳେ ଥରେ ଦି'ଥର ଗାଆଁକୁ ଯାଇଥିଲେ । ମାତ୍ର ଅଳ୍ପ କେତେ ଘଂଟା ରହି ଫେରି ଆସିଥିଲେ ନିଜ କର୍ମସ୍ଥାନକୁ । କାମର ଝଂଝଟ ସାଂଗକୁ ଥିଲା ଗାଁରେ ବାସଗୃହ ଅଭାବର ସମସ୍ୟା । ଗାଁରେ ସେ ଏ ପର୍ଯ୍ୟଂନ୍ତ ନିଜ ରହିବା ଭଳି ଘର ଖଂଡିଏ ମଧ୍ୟ କରିପାରିଲେ ନାହିଁ । ଭିଟା ଜମି ହୋଇ ଯାହା କେତେ ଗୁଂଠ ତାଂକ ଭାଗରେ ପଡ଼ିଥିଲା ତାହା ସେମିତି ଖାଁ ଖାଁ ପଡ଼ିଛି । ଗୁଂକୁଡ଼ା ଗୁଗୁଚିଆ ବାଇଡଂକ ମାଡ଼ିଗଲଣି । ଆଜିକାଲି ଘର ଖଂଡିଏ କରିବା କଣ ସହଜ କଥା ! ବିଶେଷତଃ ତାଂକ ଭଳି ଜଣେ ଏକୁଟିଆ ଲୋକ ପକ୍ଷରେ ! ସେ କେତେ କୁଆଡ଼େ ହେବେ ! ସେଥିପାଇଁ ସେ ଆଶା ସେ ଏକ-ପ୍ରକାର ଛାଡ଼ି ଦେଇଛଂତି । ଗାଆଁକୁ କେବେ କମିତି ଯିବାକୁ ହେଲେ ସେ ଭାଇମାନଂକ ଘରେ ଦିନେ ଓଳିଏ ରହି ଯେତେ ଶୀଘ୍ର ପାରଂତି କର୍ମସ୍ଥାନକୁ ଫେରି ଆସଂତି ।

ଦିନାକେତେ ଗ୍ରାମମଂଗଳରେ ଥିଲାବେଳେ ସେ ଗାଆଁକୁ ଯିବାପାଇଁ ଶିକ୍ଷିତ ବେକାର ଯୁବକମାନଂକୁ ଉଦ୍‌ବୋଧନ ଦେଇଛଂତି । 'ଗାଁଆକୁ ଚାଲ', 'ଗାଁଆ ମାଟି ଡାକେରେ' ପ୍ରଭୃତି କେତୋଟି ଭଲ ଭଲ ସ୍ଲୋଗାନ ମଧ୍ୟ ବଡ଼ ବଡ଼ ପୋଷ୍ଟର କରି ଚାରିଆଡ଼େ କାଂଥବାଡ଼ରେ ମରାଇଛଂତି । ବିଭାଗୀୟ ମନ୍ତ୍ରୀଂକ ସଂଗେ ଜିପ୍‌ରେ ଗଲାବେଳେ ଗ୍ରାମ୍ୟ ସ୍ତରର ଉତ୍କର୍ଷ ବିଷୟରେ ତଥ୍ୟମୂଳକ ଆଲୋଚନା ମଧ୍ୟ

କରିଛଂତି । ହେଲେ ତାଂକର ଗାଆଁ ସହିତ ସମ୍ପର୍କଟା କେବଳ ପୋଥି ବାଇଗଣ ହୋଇ ହିଁ ରହିଯାଇଚି ।

ପାଖ ସହରରେ ବସ୍‌ରୁ ଓହ୍ଲାଇ ପ୍ରାୟ ଦୁଇ ମାଇଲ ବାଟ ରିକ୍‌ସାରେ ଗଲେ ଯାଇ ଗାଆଁ ପହଂଚ । ସେଥିରୁ ପୁଣି ବର୍ଷାଦିନେ ମାଇଲଏ ଖଂଡେ ପାଦରେ ଚାଲି ଚାଲି ଯିବାକୁ ହୁଏ । ସଂଜ ହୋଇଆସିଲାଣି । ବସ୍‌ଟା ବାଟରେ ପ୍ରାୟ ଅଧଘଂଟାଏ ଲେଟ୍ କରିଦେଲା । ଶୁଳେଇ ପାଖରେ ଜଣେ ଯାତ୍ରୀ ସଂଗରେ ବସ୍ କଂଡକ୍‌ଟରର ଝଗଡ଼ା ଲାଗିଗଲା ମାଲପତ୍ରର ମାସୁଲ ନେଇ । କେତେକ ଯାତ୍ରୀ ଓହ୍ଲାଇଯାଉଥିବା ଯାତ୍ରୀ ଜଣକର ପକ୍ଷ ନେବା ଫଳରେ ଜିନିଷଟା ଆହୁରି ଜଟିଳ ହୋଇଗଲା । ସହରରେ ଓହ୍ଲାଇପଡ଼ି ପଦ୍ମଚରଣ ବାବୁ ରିକ୍‌ସା ଧରିଲେ । ଯାହାହେଉ ଏଥର ଗାଁରେ ପହଂଚ-ଯିବେ ବୋଲି ତାଂକୁ ଟିକିଏ ବୋଧହେଲା । ସେ ରିକ୍‌ସାବାଲାକୁ କହିଲେ 'ଜଲ୍‌ଦି ଚାଲ୍' ।

ସହର ଛକ ପାର ନ ହେଉଣୁ ପଦ୍ମଚରଣବାବୁ ଦେଖିଲେ ତାଂକ ଖୁଡ଼ା ଘର ହଳିଆ ନଟିଆ କିଛି ସଉଦାପତ୍ର ନେଇ ଆସୁଚି । ତାଂକୁ ଦେଖି ଦଂଡବତ ହେଲା । କହିଲା 'ପଦ ସାଆଂତେ ନା ! ଜୁହାର ।' ପଦବାବୁ ପଚାରିଲେ, 'ଆମ ଘରେ ସବୁ ଭଲ ତ !' 'ଆମ ଘରେ' ଶବ୍ଦ ଦି'ଟା ଉଚ୍ଚାରଣ କଲାବେଳେ ତାଂକ ନିଜ କଥା ତାଂକ କାନକୁ ଟିକିଏ କିମିତି ଅବାସ୍ତବ ଜଣାଗଲା । ନଟିଆ କହିଲା, ଆଜ୍ଞା ହଁ । ଆପଣ ଆଗରେ ଯାଆଂତୁ । ସାଆଂତେ ଗୋଟାଏ ଜିନିଷ ନେବାକୁ ବରାଦ ଦେଇଛଂତି । ମୁଁ ନେଇକରି ଯାଉଚି ।

ପଦବାବୁ ଗାଁଆ ଆଡ଼କୁ ମୁହାଁଇଲେ । କିଛି ଦୂର ଯାଇ ଦେଖିଲେ ଉପର ସାହି ରାମା ଗଉଡ଼ ଶଗଡ଼ କଲେଇ ନେଇଯାଉଛି । ତାକୁ ହଠାତ୍ ଚିହ୍ନି ପାରିନଥିଲେ । ତାଂକ ଭେଂଡା ବୟସରେ ଦେଖିଥିବା ରାମା ଗଉଡ଼ ଆଜି ପାକଲା ବୁଢ଼ା ! ଦାଂତ ପଡ଼ିଗଲାଣି । ପଦବାବୁ ରିକ୍‌ସାରୁ ଝୁଂକିପଡ଼ି ପଚାରିଲେ, କିଏ ରାମା ନା ! ମାତ୍ର ରାମା ସେତେବେଳକୁ ବଳଦ ଦି'ଟାଂକ ଲଞ୍ଜସଂଧାରେ ହାତ ପୂରାଇ ଦେଇ ସେମାନଂକୁ ଅଶ୍ରାବ୍ୟ ଭାଷାରେ ଗାଳିଦେବାକୁ ଲାଗିଥିଲା । ସେ ପଦବାବୁଂକ କଥା ଶୁଣି ପାରିଲା ନାହିଁ କି ଶୁଣିଥିଲେ ମଧ୍ୟ ଚିହ୍ନି ପାରିଲା ନାହିଁ । ପଦବାବୁଂକର ମନେପଡ଼ିଲା ଏଇ ରାମା ଗଉଡ଼ ରାମଲୀଳାରେ ମଂଥରା ଓ ସୂର୍ପଣଖା ପାର୍ଟ କରୁଥିଲା । କାଠ ମୁଖା ପିଂଧି ସେ ସୂର୍ପଣଖା ହୋଇ ନାଚିନାଚି ଆସିଲାବେଳେ ଦର୍ଶକମାନଂକ ମଧ୍ୟରେ ହସର ଲହଡ଼ି ଛୁଟିଯାଉଥିଲା ।

ପଦବାବୁ ପୁଣି ଅନ୍ୟମନସ୍କ ହୋଇପଡ଼ିଲେ । ବାପା ବଂଚିଥିବା ବେଳେ ସେ କଲେଜଛୁଟିରେ ଗାଆଁକୁ ଆସୁଛଂତି ବୋଲି ଚିଠି ପାଇଲେ ଶଗଡ଼ ପଠାଇ ଦିଅଂତି ।

ପଦ୍ମବାବୁ ବସ ଷ୍ଟାଂଡ଼ରୁ ସିଧାସଳଖ ଶଗଡ଼ରେ ବସି ଘରକୁ ଆସଂତି । ଦୀର୍ଘ ତେଇଶ ପଚିଂଶି ବର୍ଷ ଧରି ସେ ଗାଁଠାରୁ ଦୂରଛଡ଼ା କହିଲେ ଚଳେ । ସବୁ କଛି ବଦଳି ଗଲାଣି । ରାସ୍ତା ସବୁ କେତେ ଭଲ ହୋଇଗଲାଣି । କେବଳ ମାଝିରେ ମାଇଲଏ ଖଂଡେ ଯାହା ମାଟି ରାସ୍ତା ଅଛି । ସେ ନାଳଟା ଉପରେ ପୋଳ ହୋଇ ପାରୁନାହିଁ । ଅଥଚ ମଂତ୍ରୀଂକୁ ଆଣି ବୁଲାଇ ନେଇଗଲେ କାମ ହାସଲ ହୋଇଯାଆଂତା । କିଂତୁ ସେତକ ମଧ୍ୟ ଗାଆଁ-ଲୋକେ କରି ପାରୁ ନାହାଂତି । ନିଜ ଭିତରେ କଳି ତକରାଳରେ ତ ଦିନଗଲା, ଗାଆଁ କଥା ଚିଂତା କରୁଛି କଏ ?

ପଦ୍ମବାବୁ ଅନେକ ଥର ଭାବିଛଂତି ଅବସର ନେବାପରେ ଗାଁରେ ଝଂଟେ ଶ୍ରେଷ୍ଠ ଘର ଖଂଡେ କରି ସପରିବାର ଯାଇ ରହିବେ । ରାଜଧାନୀରେ ଆଂଶିକ ସରକାରୀ ଋଣରେ କରିଥିବା ଘରଟାକୁ ଭଡ଼ା ଲଗାଇଦେବେ । କିଂତୁ ଶେଷମୁହୂର୍ତ୍ତରେ ତାଂକର ସେ ଚିଂତା ଭାବନା କୁଆଡ଼େ ମଉଳି ଯାଇଛି । ଗାଁରେ ଖାଲି ଆସି ରହିଲେ ତ ହେବନାହିଁ । ଏଠି ସେ ପିଲାପିଲି ନେଇ ଚଳିବେ କିପରି ? ପୈତୃକ ଜମିଜମା ହୋଇ ଯାହା ଚାରି ମାଣ ଅଛି ସେଥିରୁ ଯେଉଁ ଧାନଗଂଡାକ ସେ ପାଆଂତି ସେଥିରେ ବର୍ଷ ମାସ ମଧ୍ୟ ଚଳେ ନାହିଁ । ତା'ଛଡ଼ା ସେଥିର ବା ସ୍ୱାର୍ଥରକ୍ଷା କିଏ ? କେଉଁଠିକ ଯେ ଭାଗଚାଷୀ ମାନେ ବର୍ଷକ ତାର ଖବର ମଧ୍ୟ ସେ ପାଇବେ ନାହିଁ । ପ୍ରତିକାର କରିବା ତ ଦୂରର କଥା । ଗାଁରେ ଚାରିପାଂଚ ଜଣ ଯୁବକ କମ୍ୟୁନିଷ୍ଟ ମଧ୍ୟ ହେଲେଣି ବୋଲି ସେ ଖବର ପାଇଛଂତି । କେତେବେଳେ ସେ କେଉଁ କଥା କଏ ସେ କହିବ ? ତା'ଛଡ଼ା ଆଜିକାଲି ଅନେକ ସମୟରେ ଗାଁ ଲୋକେ ଧାନଗୁଡ଼ିକ ବାହାରକୁ ଛାଡ଼ୁ ନାହାଂତି । ବସ୍ ଅଟକାଇ ଦେଉଛଂତି । ତାଂକ ପିଲାମାନଂକର ପାଠପଢ଼ା ମଧ୍ୟ ସରିନାହିଁ । କେବଳ ବଡ଼ ପୁଅଟିହିଁ ଯାହା ଏବର୍ଷ ବି.ଏ. ପାସ୍ କରି ରାଉରକେଲାରେ ଇଂଜିନିୟରିଂ ପଢୁଛି । ବାକି ଚାରିପୁଅ ଓ ଦୁଇ ଝିଅ ତ ଏପର୍ଯ୍ୟଂତ ସ୍କୁଲ କଲେଜ ପାଠ ସାରି ନାହାଂତି । ତେଣୁ ରାଜଧାନୀରେ ରହିବା ଛଡ଼ା ଅନ୍ୟ ଉପାୟ କ'ଣ ଅଛି ?

ସେଥିପାଇଁ ପଦ୍ମଚରଣ ବାବୁ ବହୁତ ଭାବି ଚିଂତି ସ୍ଥିର କରିଛଂତି ଗାଁରେ ଥିବା ଜମି ଗୁଡ଼ିକ ବିକ୍ରି କରିଦେଇ ସେଉଁ ଟଂକାରେ ତାଂକ ଭୁବନେଶ୍ୱର ଘର ହତାରେ ଥିବା ଖାଲି ଜାଗାରେ, ରାସ୍ତା କଡ଼କୁ ଲଗାଇ ଦୁଇ ତିନି ବଖରା ଦୋକାନ ଘର ତୋଳାଇବେ । ଘରଭଡ଼ାରୁ ଅଂତତଃ ମାସକୁ ଦେଢ଼ଶହ ଦୁଇଶହ ଟଂକା ମିଳିବ । ତା ସାଂଗରେ ତାଂକ ପେନ୍‌ସନ ଟଂକାତକ ମିଶିଲେ ସଂସାରଟା ବେଶ୍ ସୁରୁଖୁରୁରେ ଚଳିଯିବ । ବାକି ପଡ଼ିଥିବା ସରକାରୀ ଋଣ ମଧ୍ୟ ଧୀରେ ସୁସ୍ଥେ ସୁଝି ଦେଇପାରିବେ ।

ତେଣୁ ମଝିଆ ଭାଇ ବୈରୋଚନଂକୁ ଆଗରୁ ଚିଠି ଲେଖି ଖରିଦଦାର ଠିକ୍ କରି ଜମି ବିକିବାକୁ ସେ ଗାଁକୁ ଯାଉଛଂତି । ଗାଁ ପାଖେଇ ଆସିଲାଣି । ଗାଁ ମୁଂଡବଡ଼-

ଯୋଗାଣ ହଉଛି । ଏଇଠୁ ସେ ପିଲାଙ୍କୁ କେତେ କର୍ଣ୍ଣଫୁଲ ତୋଳୁଛନ୍ତି । ଅନ୍ୟ ସାଙ୍ଗ ପିଲାଏ ଉଠିବା ଆଗରୁ ସେ ଆଉ ତାଙ୍କ ସବା ସାନଭାଇ ବିଲୋଚନ (ଯିଏ ଏବେ ବାଲୁମେଳାରେ କଂଟ୍ରାକ୍‌ଟରୀ କରୁଛି । ପ୍ରାୟ ଦଶବର୍ଷ ହେବ ଦେଖା ହୋଇନି ତା ସଂଗେ) ବନ୍ତଭେରିରୁ ଆସି କଂଧରେ କାଂଧେ କର୍ଣ୍ଣଫୁଲ୍ ତୋଳିନେଇ ଭାଲୁକୁଣୀ ଓଷାପାଇଁ ମରୁଆ ଆପାକୁ ଦେଇ ଦଉଥାନ୍ତି । ଅନ୍ୟ ଗାଁର ପିଲାଏ ଆସି ଦେଖନ୍ତି ପୋଖରୀ ଶୂନ୍ । ଏଥିପାଇଁ କେତେ ଛକାଛକର ସାମନା କରିବାକୁ ପଡ଼ିଚି ଦୁହିଙ୍କୁ ।

ବାପା ବୋଉ ସେ କଟକରେ କଲେଜରେ ପଢ଼ୁଥିବା ବେଳେହିଁ ଗୁଜୁରିଗଲେ । ତାପରେ ସ୍କୁଲରୀ । ଗାଁ ସଂଗରେ ତାଙ୍କର ଏକମାତ୍ର ସମ୍ପର୍କର ରଜ୍ଜୁ ଥିଲା ଏଇ ବିଲ କେତେ ମାଣକ । ତାକୁ ମଧ୍ୟ ଆଜି ସିଏ ବିକି ଦେବାକୁ ବାହାରିଛନ୍ତି । ତା'ପରେ ତାଙ୍କର ଆଉ ଏ ଗାଁରେ ରହିବ କଣ ? ସେ ହେବେ ଏଣିକି ଏ ଗାଁରେ ଜଣେ ପରଦେଶୀଆ କୁଣିଆ । ସେ ପଟେ କେତକୀଝଟର ଜୋଡ଼ଟା ସାପକାଣ୍ଡ ପରି ଚକ୍ ବକ୍ କରୁଚି, ଅଗଣିତ କଅଁଳିଆ ଭିତରେ । ସେଇଠୁ ଗୋଟାଏ ଡେଂଗା ତାଳଗଛ ଉପରୁ ଜହ୍ନ ଉଠିବ ଆଉ ଟିକଏ ପରେ । ସେଇ ଜୋଡ଼ କୂଳରେ ତାଂକର ଜମି ମଧ୍ୟ ଦେଖା-ଯାଉଚି ।

ସେ ଗାଁରେ ପଶିଲେ । ମଝି ସାହିରେ ସପନୀ ମା ଘର । ସପନୀ ମା ଥିଲା ବାପାଂକର ରକ୍ଷିତା । ବାପା ତାକୁ ଖଂଡେ ଘର କରିଦେଇ ଏଇଠି ରଖାଇଥିଲେ । ବାପା ବୋଉଙ୍କ ଭିତରେ ଏଥିପାଇଁ ଅନେକ ଥର କଜିଆ ଓ ଗାଗରିପା ହେବାର ସେ ଦେଖିଛନ୍ତି । ସପନୀ କେତେ ବର୍ଷ ହେଲା ମରିଗଲାଣି । ସେ ଘରଟା ମଧ୍ୟ ଭାଂଗି ଭୁଷୁଡ଼ି ପଡ଼ିଚି । ଖାଲି ପଥର ଖଂଟି କେଇଟା ଯାହା ଛିଡ଼ା ହୋଇଚି । ପଦବାବୁଂକର ମନେପଡ଼ିଲା ସପନୀ ମା ପାଂଖରେ ଗଲାବେଳେ ତାଂକୁ ଘରକୁ ଡାକିନେଇ କେତେ ପିଜୁଳି, ନଡ଼ିଆ, ଆଖୁ କାଟି କରି ଦଏ । ଶରଧାରେ ତାଂକ ମୁଂଡ ଆଉଁସି ଦଏ । ସେ ଘରେ କାହାକୁ ସେକଥା କହୁଂନି ନାହିଁ । ତାଂକର କମିତ ଗୋଟାଏ ଧାରଣା ଥିଲା ଯେ ବୋଉ ଶୁଣିଲେ ଚଡ଼ିବ ।

ପଦବାବୁ ଭାଇଂକ ଘରେ ପହଂଚିଲେ । ବୈରାଗୀଚରଣ ବାବୁ ସେ ଗାଁର ଅପର ପ୍ରାଇମେରୀ ସ୍କୁଲ ଶିକ୍ଷକ । ସେ ଆଣି ଦାଂଡଦୁଆରେ ଗୋଟାଏ ଚୌକୀ ପକାଇଦେଲେ । ପଦ୍ମଚରଣ ବାବୁ ବସିଲେ । ବୈରାଗୀଚରଣ ବାବୁ କହିଲେ, ସେ ଅମିନ ମୁରାରି ମିଶ୍ରଂକୁ ଖବର ଦେଇଛନ୍ତି । ସେ କାଲି ସକାଳ ବେଳକୁ ଜମି ଉପରକୁ ଯିବେ । ଖରିଦଦାର ଫକୀର୍ ସାହୁ ମଧ୍ୟ ଥିବେ । ମପାଚୁପା ହୋଇଯିବା ପରେ ଦିନ ଦଶଟା ସୁଦ୍ଧା ଦହେଁ ଯାଇ ରେଜେଷ୍ଟ୍ରି କରିଦେବେ । ଦିଆ-ନିଆ କଥା ତ ଆଗରୁ ଛିଡ଼ିଛି । କବଲା ଲେଖିବାକୁ ସେ ମୋହରିର ଜଟି କାଳଗୋଇଂକ ଜମିର ନଂବର ଇତ୍ୟାଦି ଦେଇଆସିଛନ୍ତି ।

ସଂଗେ ସଂଗେ ଷ୍ଟାଂପ୍ କାଗଜ ବ ମିଳିଯିବ । ତେବୁ ଆଉ କଚ୍ଛ ଚିଂତା କରିବାର ନାହିଁ ସେ ଗୋଡ଼ହାତ ଧୋଇ ଖିଆପିଆ କରି ବିଶ୍ରାମ ନଅଂତୁ । ତାପରେ ସେ ସୁଯୁଫାସ୍ କରି କହିଲେ; ଖରଦ୍ଦାର ନକୁଳ ସାହୁ ପ୍ରଥମେ କିଦ୍ ଧରିଥିଲେ ଯେ ବାସ୍ତା ଅଧେ ରେଜିଷ୍ଟ୍ରି ଖରଚ ଦଅଂତୁ; ମାତ ମୁଁ ତାଂକୁ ବହୁତ ବୁଝାଉଥିଲ କରି ଚାରି ଅଣାରେ ରାଜି କରାଇଛି । ଭଗଗୃଷ୍ଣୀ ଦୁଇ ଅଣା ନେବାକୁ କହୁଛି । ପଦ୍ମଚରଣ ବାବୁ କହିଲେ ଠିକ୍ ଅଛି । ସେଇଆ ହେବ ।

ତହିଁ ଆରଦିନ ସକାଳ ଦଶଟାରେ ପଦ୍ମଚରଣ ବାବୁ ଗିଂଡାଏ ଖାଇଦେଇ ନକ୍ସା ଓ ଦଲିଲପତ୍ର ଧରି ଜମି ଉପରକୁ ଗଲେ । ସଂଗରେ ଥ ଏ ଭଗଗୃଷ୍ଣୀ କେଳୁଆ । ବୈଦ୍ୟେଚନ ବାବୁ ଏମାନଂକୁ ଜମି ଉପରକୁ ପଠାଇଦେଇ ସ୍କୁଲ୍କୁ ଗଲେ । କଂଠ ଅମିନ ମୁରାରି ଭଞ୍ଜନାଂକର ଦେଖାନାହିଁ । ଗୁହୁଁ ଗୁହୁଁ ଏଗରଟା ବାଜିଲା । ପଦ୍ଦବାବୁ କେଳୁଆକୁ ପଠାଇଲେ ଅମିନଂକୁ ଯାଇ ଡାକିଆଣିବା ପାଇଁ । ଅଧଘଂଟାକ ପରେ କେଳୁଆ ଫେରିଆସି ଖବରଦେଲା 'ଆଜ୍ଞା, ମିଶ୍ର ଆପଣେ ଘରେ ନାହାଂତି । ପାଖ ଗାଁ ତରିବୋଇକୁ ଚୂଡ଼ାଦହି ଖାଇ ଯାଇଛଂତି । ଆଜି ସେ ଗାଆଁ ନଥି ନଂଦଂକ ଶ୍ରାଦ୍ଧ ଦିନ । ପୁଅମାନେ ବାହ୍ମଣ ଭୋଜନ କରାଉଛଂତି । ପୁରୁଣା ଯଜମାନ, ନଯିବେ କେମିତି ? ଘରେ କହିଦେଇ ଯାଇଛଂତି ଯେ ଗୁଡ଼ାଇ ଲେଉଟଣି ଗିଧାସଲଖ ବିଲ୍ ଉପରକୁ ଆସିବେ ।

ପଦ୍ଦବାବୁ ରାଗରେ ଗରଗର ହୋଇ ଅଗତ୍ୟା ଯାଇ ବିଲମୁଂଡ ଆଂବଗଛ ଗୁଡ଼ିରେ ବସିଲେ । ଶୀତଦିନଆ ଖରା । ଏଇ ଫଗୁଣ ମାସରେ ହିଁ ଜମି କିଣିବା କଥା ! ତା'ନହେଲେ ଭଗଗୃଷ୍ଣୀ ଧାନ ବୁଣିଦେବ । ପୁଣି ବର୍ଷେ ଅପେକ୍ଷା କରିବାକୁ ପଡ଼ିବ. ଧାନକଟା ସରିଛି । ଖରଦ୍ଦାର ଫକୀର ସାହୁ ଆସି ପହଂଚିଲେ । ସେ ମଧ୍ୟ ସେଇ ଗଛମୂଳେ ପଦ୍ଦବାବୁଂକ ପାଖରେ ବସିପଡ଼ି ଅମିନଂକୁ ଅପେକ୍ଷା କରିବାକୁ ଲାଗିଲେ । ଦୁହେଁ ନାନା ଗପସପ ହେଉହେଉ ପଦ୍ଦବାବୁଂକ ଆଖି ଲାଗିଆସିଲା । ସେ ଡଉଲ୍ଅଟା ବିଛାଇଦେଇ ବାଆଁ ପଟ ବାହୁ ଉପରେ ମୁଂଡରଖି ଟିକିଏ ଗଡ଼ିପଡ଼ିଲେ । ଫକୀର ସାହୁ ଓ କେଳୁଆ ମଧ୍ୟ କଚ୍ଛ ସମୟ ପରେ ଟିକିଏ ନିଦେଇଗଲେ ।

ହଠାତ୍ ପଦ୍ଦବାବୁଂକର ମନେହେଲା ଯେ ଗଛ ଉପରେ ଗୋଟାଏ ବଡ଼ ମାଂକଡ଼ ସେମିତି ଏ ଡାଳରୁ ସେ ଡାଳକୁ ଡେଉଁଛି । ସମସ୍ତ ଗଛଟାକୁ ଦୋହଲାଇ ସେ ଖାଲି କୁଦା ମାରୁଛି । ସେ ଭାବିଲେ ଡାଳଟା ତାଂକ ଉପରେ କୁଟୁଡ଼େଇ ହୋଇ ପଡ଼ିବ ନା କଣ । ସେ ନିଦମଳମଳ ଆଖିରେ ଉଠିପଡ଼ି କେଳୁଆକୁ ଡାକ ଗୁଡ଼ିଲେ । କେଳୁଆ ଉଠି ବସିବାରୁ କହିଲେ; ଦେଖିଲୁ, ଦେଖିଲୁ ମାଂକଡ଼ଟାଏ କେମିତି ଅଥୟ ହୋଇ ଡେଉଁଛି । ମୁଁ ଭାବୁଛି ଡାଳ ଦ'ଟା ମୋ' ଉପରେ ଛିଡ଼ିପଡ଼ିବ । କେଳୁଆ ଠିଆ ହୋଇ

ଘୃଣଆଡ଼କୁ ଅନାଇ କରି କହିଲା, କାହିଁ ମାଂକଡ଼ ଫାଂକଡ଼ ତ କିଛି ନାହିଁ । ଗଛ ଶିଖରେ ବଗବଗୁଲି ଦୁ'ଟା ବସିଛନ୍ତି । ମାଂକଡ଼ ଦେଖିଥିଲେ ଚଢ଼େଇ ଦୁ'ଟା ବସିଥାଂନ୍ତେ କିମିତି ? ଫକୀର ସାହୁ ମଧ୍ୟ ସେତେବେଳକୁ ଉଠିପଡ଼ିଥିଲେ । ସେ ମଧ୍ୟ କେଳୁଆକୁ ସମର୍ଥନ କରି କହିଲେ ; କାହିଁ ମାଂକଡ଼ କାହିଁ ? ତମେ କଣ ସପନ ଦେଖିଲ କି ପଦବାବୁ ? ପଦବାବୁ କହିଲେ ନାହିଁ, ନାଇଁ, ନିଶ୍ଚୟ ମାଂକଡ଼ ଥିଲା । ମୁଁ ନିଜେ ଦେଖିଛି । କୁଆଡ଼େ ପଳାଇଯିବଣି ।

ଅମିନ ମୁରାରି ମିଶ୍ରେ ପାଖ ଗୋଟାକବେଳେ ଆସି ପହଂଚିଲେ । ଶିଂକୁଳି ପକାଇ ଜମି ମାପହେଲା । ଫକୀର ସାହୁ କହିଲେ, ସୀମକଡରେ ଘୃଣଟା ଖୁଂଟ ପୋତିଦେବା । ଆଉ କିଛି ଗୋଲମାଲ ନଥିବ । ତା' ନହେଲେ ପାଖ ଜମିବାଲା ବଡ଼ ବେହେଇ ଯେଉଁ ଲୋକ ନା ନାନା ଗଂଡଗୋଳ ବାହାର କରିବ ଦଖଲ ନେବାବେଳେ ।

କେଳୁଆକୁ ମାଟିଖୋଳି ଘୃଣଟା ବଡ଼ କାଠ ଖୁଂଟ ପୋତିଦେବାକୁ ପଦବାବୁ କହିଲେ । କେଳୁଆ ତିନିଟା ଖୁଂଟ ପୋତିସାରି ଚତୁର୍ଥ ଗାତଟା ଖୋଳିବାକୁ ଲାଗିଲା । ପଦବାବୁ ଘଂଟା ଦେଖି କହିଲେ, ଟିକିଏ ଜଲଦି କର କେଳୁ । ଦୁଇଟା ବାଜିଗଲାଣି । ତିନିଟା ବେଳକୁ ସବ୍‌ରେଜିଷ୍ଟ୍ରାର ଅଫିସରେ ପହଂଚିବାକୁ ହେବ । ବୈରୋଚନା ମଧ୍ୟ ସେଠିକି ଆସିଥିବ । ଆଜି କୌଣସିମତେ ରେଜେଷ୍ଟ୍ରି କରିଦେବା । ମୁଁ ସଂଜ ବସ୍‌ରେ ଭୁବନେଶ୍ୱର ଲେଉଟିଯିବି । ସିଆଡ଼େ ଘରେ ପିଲାମାନେ କ'ଣ କରୁଥିବେ । ରେଜେଷ୍ଟ୍ରି ପରେ ମୁଁ ତୋର ସବୁ ପାଉଣାପଣ ତୁଟାଇଦେବି । ଟିକିଏ ଜଲଦି ଜଲଦି ହାତଚଲା ବାପ ।

କେଳୁଆ ଦେଢ଼ହାତ ଗଭୀର ଖୋଳିସାରି ମାଟି କାଢ଼ିଲାବେଳେ ତା' ହାତକୁ କ'ଣ ଗୋଟାଏ ଟାଣ ହୋଇ ଲାଗିଲା । ସେ ଗାଡ଼ଟାକୁ ଆହୁରି ଚୌଡ଼ା କରି ଖୋଳି ହାତପୂରାଇ ସେଇଟାକୁ ଟାଣିଆଣିଲା । ସମସ୍ତେ ଦେଖିଲେ ଗୋଟାଏ ମସ୍ତବଡ଼ ମାଂକଡ଼ । କଂକାଳଟାଏ । କେଳୁଆ ସେଇଟାକୁ ଟାଣିଆଣି ମାଟି ଉପରେ କଚାଡ଼ିଦେଲା ।

ପଦବାବୁ ହା ହାଁ କରି ପଛେଇ ପଛେଇ ଯାଇ ଗଛମୂଳେ ବସିପଡ଼ିଲେ । ଯେମିତି ମୁଂଡରେ ହାତଦେଇ ବସିଥାଂନ୍ତି । କିଛି ସମୟ ଯାଏ କଥା କହିପାରିଲେ ନାଇଁ । କେଳୁଆ ମଜବୁତ୍ କରି ଖୁଂଟଟା ପୋତି ଦେଇସାରି ପୋଖରୀରେ ହାତଗୋଡ଼ ଧୋଇ ଆସି କହିଲା; ଚାଲ, ଯିବା ଯାଆଂନ୍ତେ ।

କିଂତୁ ପଦବାବୁ ନିର୍ବାକ, ନିସ୍ପଂଦ । କିଛି ସମୟପରେ କହିଲେ : ଆମ ପୁରୋହିତ ସନାତନ ମିଶ୍ରେ କୁଆଡେ ଗଲେ ? ତାଂକୁ ଟିକିଏ ଡାକ ।

ଫକୀର ମାଷ୍ଟ୍ର କହିଲେ ସନାତନ ମିଶ୍ରେ କଣ କରିବେ ? ସେ ପରା ଦ ବର୍ଷ ହେଲା ମଲେଣି ।

"ଏଁ ମଲେଣି ? କଣ ହୋଇଥିଲା ?"

"ହବ ଆଉ କଣ ? ବୁଢ଼ାହୋଇଯାଇଥିଲେ । ବାଧକା ପଡ଼ିଲେ । ଶରୀର ତ ବ୍ୟାଧି ମନ୍ଦିର ।

ବୁଢ଼ା ହୋଇଯାଇଥିଲେ ? ପଦ୍ମବାବୁ ଚମକି ପଡ଼ିଲେ । ସେ ତ ତାଂକର ସାଂଗରେ ଖେଳି ବୁଲି ଦୌଡ଼ୁଥିଲେ । ବୁଢ଼ା ହେଲେ କେବେ ? ତା'ପରେ ସେ ନିଜ ଆଡ଼କୁ ଚାହିଁଲେ । ହଁ, ସେ ତ ଆସି ଅଠାବନ ବର୍ଷ ପାରହୋଇ ଗଲେଣି । ସନାତନ ମିଶ୍ରେ ତାଂକଠୁ ଦୁ' ଚାରିବର୍ଷ ବଡ଼ ହୋଇ ନ ଥିବେ ନା କଣ ? ତେବେ କଣ ଷଠା ଷାଠିଏ ପାରହୋଇ ଯାଇ ନଥିବେ କିଆଁ ?

ପଦ୍ମବାବୁଂକର ମନେପଡ଼ିଲା ପଇଁଚାଳିଶ ବର୍ଷ ତଳେ ଯେବେ ସେ ଆଉ ସନାତନ ମିଶ୍ରେ ମାଂକଡ଼ ଚଢ଼ୁଥିଲେ । ସେତେବେଳେ ତାଂକ ନନା ପୁରୋହିତ ଥିଲେ । ତାଂକ ସାଂଗରେ ଥିଲା ସେ କାଳିଆ କୁକୁରଟା, ବୁଲି ।

ଦୁ'ଟା ମାଂକଡ଼ ପୋଖରୀ ତୋଟା ବାହାଡ଼ା ଗଛ ଉପରେ ବସି ଦାନ୍ତେଁ ଦାନ୍ତିକ ଗୋଳକରୁଥିଲେ । ସନାତନ ମିଶ୍ରେ ମାରିଲେ ଗୋଟାଏ ଢେଲା । ଗୋଟାଏ ମାଂକଡ଼ର ଠିକ୍ ଗାଲରେ ବାଜିଲା । ସେ ବ ଛାଡ଼ିଲେ ଗୋଟାଏ ଢେଲା । ଆଉ ମାଂକଡ଼ଟାର ପିଠିରେ ବସିଲା । ଦୁ'ଟାଯାକ ମାଂକଡ଼ ପ୍ରାଣବିକଳରେ ତଳକୁ ଡେଇଁ ପଡ଼ିଲେ ଏବଂ ଦୌଡ଼ି ପଳାଇବାକୁ ଲାଗିଲେ । ବୁଲି ଦୌଡ଼ିଯାଇ ଗୋଟାକର ଲାଂଜ ଟି କାମୁଡ଼ିଦେଲା । ସେ ଆଉ ସନାତନ ମିଶ୍ରେ ସେଟାକୁ ଟାଣି ଟାଣି ନେଇ ପୋଖରୀ ହୁଡ଼ାରେ ପକାଇଲେ । ତା ମୁହଁରେ ପାଣିଦେଲେ । କିନ୍ତୁ ସେ ଆଉ ବଂଚିଲା ନାହିଁ । ତା'ପରେ ଦୁହେଁ ଅପରାଧୀଂକ ଭଳିଆ ସେଟାକୁ ନେଇ ଉଦୁଗୁଦିଆ ଦୁ'ପହରେ ତାଂକ ବାଡ଼ିର ଗୋଟାଏ କଣରେ ଗାଡ଼ଖୋଳି ପୋତିଦେଲେ । କାହାକୁ କିଛି ନ କହି ଚୁପଚାପ ନିଜ ନିଜ ଘରକୁ ଫେରିଗଲେ ।

ଖଂଡେ ଦୂର ଗଲାପରେ ସେମାନେ ପଛକୁ ଚାହିଁ ଦେଖିଲେ ଆଉ ମାଂକଡ଼ଟା ସେଇ ଆଂବଗଛ ଉପରେ ବସି ତଳେ ପୋତା ଜାଗାଟାକୁ ଏକ ଦୃଷ୍ଟିରେ ଚାହିଁ ରହିଛି । ଏବଂ ବେଳେବେଳେ ଏ ଗଛରୁ ସେ ଗଛକୁ ଡେଇଁ ହୁଂକାର ଛାଡ଼ୁଛି । ସନାତନ ଓ ପଦ୍ମ ଶ୍ୱେରଂକ ପରି ଛପି ଛପି ଯାଇ ନିଜ ନିଜ ଘର ଭିତରେ ପଶିଗଲେ ।

ପଦ୍ମଚରଣ ବାବୁଂକ ମୁହଁକଳା ପଡ଼ିଯାଇଥିଲା । ତାଂକର ମନେହେଉଥିଲା ବହୁଦିନତଳର ଗୋଟାଏ କାଳିଆ ମୁଣ୍ଡର କଂକାଳ ଯେମିତି ମାଟିତଳୁ ବାହାରି ଆସି

ଘୃଣ ଗୋଡ଼ ଫର୍ଚା କର ତାଂକ ସାମନାରେ ଛିଡ଼ାହୋଇଚ ଅଉ ତାଂକୁ ଗୃଢ଼ି ମୁରୁକି ମୁରୁକ ହସୁଚ । ସେ କଚ୍ଛ କଥା କହ ପାରୁନଥିଲେ । ଫକୀର ସାହୁ କହିଲେ, ଚାଲଂତୁ ଯିବା । ଡେର ହୋଇଯାଉଚ !

ପଦବାବୁ ଇତସ୍ତତ କର ଘଂଟାଟାକୁ ବାରଂବାର ଦେଖି କହିଲେ, ନା, ଆଉ । ଦ'ଟା ଉପରେ ହେଲଣି । ମୁଁ ଆଜ ସନ୍ଧ୍ୟାରେ ଭୁବନେଶ୍ୱର ଚାଲଯାଉଚ । ପୁଣି କେବେ ଆସିଲେ ଦେଖିବା ।

ସେ ଅର୍ପନ ଓ କେଳୁଆ ହାତକୁ ସେମାନଂକ ପାଉଣା ବାବଦକୁ ଖଂଡେ ଖଂଡେ ପାଂଚଟଂକିଆ ନୋଟ୍ ବଢ଼ାଇଦେଇ ଏକମୁହାଁ ଦୋଇ ଘର ଆଡ଼କୁ ଚାଲିଲେ । ☐☐☐

୧୯୮୦

# ପଇସାଟିଏ !

ମାଳାଂବର ବାବୁ ଏକ ସାଂଧ୍ୟ ଆଲୋଚନା-ବନାମ-ଟି'-ପାର୍ଟିରେ ଯୋଗଦେଇ ଫେରୁଥାଂନ୍ତି । ଭୁବନେଶ୍ୱରରୁ କଟକ ବେଶୀ ରାସ୍ତା ନୁହେଁ; ମାତ୍ର କୋଡ଼ିଏ ମାଇଲ ଅର୍ଥାତ୍ ପ୍ରାୟ ଅଧଘଂଟାକର ବାଟ । ତଥାପି ମନଟା ତାଂକର ବିରକ୍ତିରେ ଭରିଯାଇଚି । ରାସ୍ତା ସରୁ-ନାହିଁ । ସେ ଭାବୁଥିଂନ୍ତି ଆଜିର ଏଇ ନିର୍ଘଣମୂଳକ ସଂଧ୍ୟାଟାକୁ ଏଭଳି ନିର୍ବୋଧ ଆଲୋଚନାରେ ଖର୍ଚ୍ଚ ନ କରି ବରଂ କଟକରେ ନିଜ ଘର ବାରଂଡାରେ ବସିରହି ଏଣୁ ତେଣୁ ଭାବୁ ଭାବୁ କଟାଇଦେଇଥିଲେ ଭଲ ହୋଇଥାଂନ୍ତା । ଯେତେ ସବୁ ବାଜେ ତର୍କ ! ପଶ୍ଚିମ ବଂଗରେ ସବୁ ମୁଖ୍ୟମଂତ୍ରୀ ବାଡ଼ୁଅ ହେଲେ କାହିଁକି ? ଆମ ଓଡ଼ିଶାର ନୂଆ ମଂତ୍ରୀମଂଡଳର ନାଥ କିଏ ? ନୂଆ ସରକାର ଅମଳରେ ଗ୍ରାମସେବିକାମାନଂକର ଭବିଷ୍ୟତ କଣ ହେବ ? ଏଇ ସବୁ ଫିଂପିମରା କଥାରେ ଲଥା ମିଳାଇ ଯୋଗଦେବାକୁ ତାଂକର ଆଦୌ ଇଚ୍ଛା ହେଉ ନ ଥିଲା । ତଥାପି ପୂର୍ଣ ତିନିଘଂଟା କାଳ ତାଂକୁ ବସି ରହିବାକୁ ହୋଇଚି ।

ରାସ୍ତା ସବୁ ଗୋଟାଏ ବଡ଼ ବର୍ଷାରେ ଧୋଇହୋଇ ଚକ୍‌ଚକ୍ ଦିଶୁଚି । ପୁଣି ବି ଟିକେ ଟିକେ କୁଂଡା ଝାଡ଼ୁଚି । ହେବା ଗଛପତ୍ର ଓ ଧାନବିଲ ଉପରେ ମୋଟର ଆଲୁଅ ପଡ଼ି ଅଭରକ ଗୁଂଡ଼ ବିଂଚିଦେଲା ପରି ଜଣା ପଡ଼ୁଚି । ଗୋଟିଏ ପେଚା ରାସ୍ତାର ଏପଟୁ ସେପଟ ଗଛକୁ ଫଡ଼୍ ଫଡ଼୍ ହୋଇ ଉଡ଼ିଗଲା । ଗୋଟାଏ କୁଲୁଆ ମଧ୍ୟ ରାସ୍ତା ପାରହେଲା, ତେବେ ଡାହାଣରୁ ବାଆଁପଟକୁ । ତାଂକର ଅନ୍ୟମନସ୍କତା ଯେ ସେ ସବୁ ଲକ୍ଷ୍ୟ ନ କରିଚି ତା ନୁହେଁ । ତେବେ ସେଥିପ୍ରତି ସେ ଧ୍ୟାନ ଦେଇପାରୁ ନାହାଂନ୍ତି । ଗାଡ଼ି ଛୁଟାଇ ଚାଲିଛଂନ୍ତି ।

ସବୁଠୁ ବେଶି ଅସ୍ୱସ୍ତିକର ଏଇ ଲେବେଲ୍ କ୍ରସିଂଟା । ସେଥିରେ ପହଂଚି ମଧ୍ୟ ନ ପହଂଚିଲା ପରି ଲାଗେ । ସେ କପାଳରୁ ଝାଳ ପୋଛିବାକୁ ଲାଗିଲେ ।

ଲେବେଲ୍ କ୍ରସିଂ ପାରହୋଇ ବକ୍‌ସିବଜାରରେ ପହଂଚିଲାବେଳକୁ ରାତି ପ୍ରାୟ ସାଢ଼େ ଦଶଟା ବାଜିଲାଣି । ବଜାର, ଦୋକାନ ପ୍ରାୟ ବନ୍ଦ ହେଲାଣି । ଅଳପ ଗୋଟାଏ ଅଧେ ଯାହା ଖୋଲାଅଛି ତାହା ମଧ୍ୟ ବଂଦ ହେବାକୁ ଯାଉଚି ।

ବତିଖୁଂଟଗୁଡ଼ାକ ପ୍ରାୟ ଅଧାଂର କହିଲେ ଚଳେ । ତାଂକର ମନେହେଲା, ଗୋଟାଏ ଖବରକାଗଜ କିଣିବା ଦରକାର । କାରଣ ତାଂକର ଘରର ହୁଏତ ଆଜି କାଗଜ କିଣି ନ ଥିବ । ସେ ଗୋଟାଏ ହକର ପିଲାକୁ ଡାକିଲେ । କାଗଜ ଖଂଡିକ ନେଇ ପ୍ରଥମ ପୃଷ୍ଠା ଉପରେ ଆଖି ବୁଲାଇ ଦେଇ ପକେଟ ଅଂଡାଳିଲେ । ବାହାରି ଆସିଲା ଗୋଟାଏ ସୁକି । ସେ ସେଇଟାକୁ ହିଁ ହକର ହାତକୁ ବଢ଼ାଇଦେଲେ । ବାର ପଇସା ନେଇ ତେର ପଇସା ଫେରାଇଦେବା କଥା, ମାତ୍ର କାଗଜବାଲା ତାଂକୁ ଫେରାଇଲା ମାତ୍ର ବାର ପଇସା, ଏକ

ଦଶ ପଇସ ଏବଂ ଏକ ଦୁଇ ପଇସାର ରେଜକି । ସେ ଅନ୍ୟମନସ୍କ ଭାବରେ ପଇସାତକ ଅଭ୍ୟାସମତେ ନିଜ ପକେଟରେ ରଖିଦେବାକୁ ଯାଉଥିଲେ; ମାତ୍ର ତାଙ୍କର ହଠାତ୍ ମନେ ହେଲା ଟିକିଏ ଗଣିକରି ଦେଖିବା ଦରକାର । ହକର ଟୋକ ସେତେବେଳକୁ ସାଇକେଲ ଛୁଟାଇ ଦଶ ବାର ହାତ ଆଗକୁ ବଢ଼ିଗଲାଣି । ତେବେ ନୀଳାଂବର ବାବୁ ତାକୁ ଡାକ ପକାଇଲେ; ଗୋଟିଏ ପଇସା କମ୍ ଥିବା କଥା ଜଣାଇଲେ । ହକର ଜବାବ ଦେଲା ତା’ ପାଖରେ ପଇସିକିଆ କିଂବା ତିନିପଇସିକିଆ ରେଜକି ନାହିଁ, ସେ ନାଚାର । ନୀଳାଂବର ବାବୁଙ୍କର ମନେପଡ଼ିଲା; ତାଙ୍କର ହକର ତାଙ୍କୁ ପ୍ରାୟ ରୋଜ ଏହିପ୍ରକାର ରିପୋର୍ଟ ଦେଇ ଆସୁଛି । ବିଭିନ୍ନ ହକରମାନେ ପ୍ରତିଦିନ ତାଙ୍କଠୁଁ ଏହିପ୍ରକାର ଗୋଟିଏ ଗୋଟିଏ ପଇସା ଅଧିକା ନେଉଛନ୍ତି ଏବଂ ସେ କ୍ଷତି ଭରଣା କରିବାକୁ ପଡ଼ୁଛି ନୀଳାଂବର ବାବୁଙ୍କୁ । ସେ ହକରଙ୍କୁ ଅଧେ ବିଶ୍ୱାସ, ଅଧେ ଅବିଶ୍ୱାସ କରିଆସୁଥିଲେ । ଆଜି ତାଙ୍କର ନିଜର ଅଭିଜ୍ଞତା ସେ ବିଷୟରେ ସୁସ୍ପଷ୍ଟ ପ୍ରମାଣ ଯୋଗାଇଲା ।

ସେ ଧରିନେଲେ ଯେ ଏହା ଏକପ୍ରକାର ସୁଚିନ୍ତିତ ଓ ସୁପରିକଳ୍ପିତ ଯୋଜନାର ଅଂଶ; ପ୍ରତି କାଗଜରେ ଗୋଟିଏ ଗୋଟିଏ ଅଧିକ ପଇସା ଅସୁଲ କରିବାର ଫନ୍ଦି । ସେ ନିଜ ଘାଟିରେ ଦାବୀକଲେ ଯେ ତାଙ୍କୁ ଅଲବତ୍ ଆଉ ଗୋଟିଏ ପଇସା ଦେବାକୁ ହେବ; ମାତ୍ର କାଗଜବିକାଳି ତା ପକେଟରୁ ସବୁ ରେଜା ବାହାର କରି ଆଂଜୁଳାରେ ଦେଖାଇଲା ଯେ ତା’ ପାଖରେ ତିନିପଇସି କିଂବା ଏକପଇସି ନାହିଁ । ନୀଳାଂବର ବାବୁ କିଂତୁ ବୁଝିଲେ ନାହିଁ । ତାଙ୍କର ଯୁକ୍ତି ହେଲା, ଯଦି ନାହିଁ, ଆଗରୁ କାହିଁକି ସେ ରଖିଲା ନାହିଁ । ସେ ଜାଣିଶୁଣି ରେଜା ରଖି ନାହିଁ । ସେ ନିଜ ପକେଟର ସବୁ ରେଜା ଆଂଜୁଳାରେ ପଦାକୁ ଆଣି ଖୋଜିବାକୁ ଲଗିଲେ । ଦେଖିଲେ ଠିକ୍ ବାର ପଇସାର ରେଜା ବାହାରୁ ନାହିଁ । ହୁଏତ ଦଶ ପଇସା ନୋହିଲେ ପଂଦର ପଇସା ବାହାରୁଛି । ସେ ରାଗରେ ହକରକୁ ଗୁଣ୍ଡାବାକ୍, ଠକ ଇତ୍ୟାଦି କହି ଅଗତ୍ୟା କାଗଜଟି ଫେରାଇଦେବାକୁ ସ୍ଥିରକଲେ । କାରଣ ତାଙ୍କ ମତରେ ଏଭଳି ସଂଗଠିତ ଠକାମିକୁ ମୁଂଡପାତି ମାନି ନେବା କୌଣସି ଦେଶପ୍ରେମୀ ପକ୍ଷରେ ଉଚିତ ନୁହେଁ । ଏହାହିଁ ଦେଶରେ ଲାଂଚପୋତେଇ ଓ ଦୁର୍ନୀତି ପ୍ରସାରଣରେ ସାହାଯ୍ୟ କରୁଛି । ସେ ହକର ହାତରୁ ସୁକଟାକୁ ଓ୍ୱାପସ ନେଇ ଜୋରରେ ମୋଟର ଛୁଟାଇଦେଲେ ।

ଅଳ୍ପ ଦୂର ଯାଇ ଆଉ ଏକ ହକର ପିଲା ହାବୁଡ଼ିଲା । ଏ କିଂତୁ ଠିକ୍ ପିଲା ନୁହେଁ, ପ୍ରାୟ ଯୁବକ, ପୁଣି କଟକିଆ ଯୁବକ ପେଂଟ୍, ହାଓ୍ୱାଇ ସାର୍ଟ ପିଂଧିଛି । ନୀଳାଂବର ବାବୁ ଗାଡ଼ି ରୋକି ତାକୁ ଡାକ କାଗଜ ମାଗିଲେ । କାଗଜ ନେଇ ପୁଣି ପକେଟର ସବୁ ରେଜକି କାଢ଼ି ତନ୍ନତନ୍ନ କରି ପରୀକ୍ଷା କରିବାକୁ ଲାଗିଲେ । ଦେଖିଲେ ପଂଦର ପଇସା ତଳକୁ କିଂବା ଦଶ ପଇସା ଉପରକୁ କିଛି ଖୁଚୁରା ନାହିଁ । ସେ ହକର ହାତକୁ ଏକ ଦଶ ପଇସା ଓ ଏକ ପାଂଚପଇସା ବଢ଼ାଇଦେଲେ; ମାତ୍ର ହକର ତିନି ପଇସା ଓ୍ୱାପସ୍ ନ ଦେଇ ତାଙ୍କୁ ଫେରାଇଦେଲା ଗୋଟିଏ ଦୋପଇସି । ବେପରବା ଭାବରେ କହିଲା, ତା’ ପାଖରେ ରେଜା

ନାହିଁ । ନୀଳାଂବର ବାବୁଂକର ଖୁନ୍ ଗରମ ହୋଇଗଲା । ସମସ୍ତେ ଯୋଇ ଏକ ଠକଗୋଷ୍ଠୀରେ ସାମିଲ । ସମସ୍ତେ ସଂଘବଦ୍ଧ ଭାବରେ ଠକେଇ କରିବା ପାଇଁ ଗୋଟାଏ ଦଳ ଗଢ଼ିଛଂତି ।

ସେତେବେଳକୁ ରାତି ପ୍ରାୟ ସାଢ଼େ ଏଗାରଟା ହେଲାଣି । ଘର ଦେଖାଯାଉଚି । ତେଣୁ ଏଇ ହେଉଚି ଆଜିର ଶେଷ ହକର । ଆଉ ହକର ଯୁଟିବାର ସଂଭାବନା ନାହିଁ । ନୀଳାଂବର ବାବୁ ଅଗତ୍ୟା ଭାବିଲେ ଗୋଟାଏ ପଇସା ଯିବ ତ ଯାଉ, ଉଚ୍ଛବାଚ ନ କରି କାଗଜଖଂଡକ କିଣିନେବେ । କିଂତୁ ତାଂକ ଦେଶପ୍ରେମ ପ୍ରତିବାଦ ଜଣାଇଲା । ସମସ୍ତେ ଯଦି ଚୁପ୍‌ଚାପ୍ ଏଭଳି ଠକେଇ ବରଦାସ୍ତ କରିନେବେ ତ ଦେଶରୁ ଦୁର୍ନୀତି ଦୁରାଚାର ଲୋପହେବ କେମିତି ?

ଏମିତିକା ମୁହଁବନ୍ଧିଆ କରି କରି ତ ଦୁର୍ନୀତି ବର୍ତ୍ତମାନ ମେଘନାଦ ପାଚେରି ପରି ଆକାଶକୁ ମୁଂଡଟେକି ଛିଡ଼ାହେଲାଣି । ଦେଶଟା ଛାରଖାର ହେବା ଉପରେ । ତାଂକର ମନେପଡ଼ିଲା ସେଇ ନୀତିବାକ୍ୟ—ଅନ୍ୟାୟ ଯେ କରେ ଆଉ ଅନ୍ୟାୟ ଯେ ସହେ ଉଭୟେ ଭଗବାନଂକ ଅଦାଲତରେ ସମାନ ଭାବରେ ଦୋଷୀ । ସେ ଭାବିଲେ ଏହାର ପ୍ରତିବାଦ କରାଯିବା ଦରକାର । ଅଂତତଃ ସମଗ୍ର ଦେଶରେ ଜଣେ ଲୋକ ଏହା ବିରୋଧରେ ସ୍ୱର ଉଠାଇବା ଦରକାର । ଆଉ ସେ ଲୋକ ଜଣକ ହେଉଛଂତି —ସ୍ୱୟଂ ନୀଳାଂବର ଦାସ ।

ହେଉ ପଛେ ପଇସାଟିଏ, ସେ ଛାଡ଼ିବେ ନାହିଁ । ତାଂକର ମନେପଡ଼ିଲା ଖବରର ରିପୋର୍ଟ । ସେ ରୋଜ ଯେଉଁଟି କାଗଜ କିଣିବାବେଳେ ପଇସାଏ ଲେଖାଏଁ ଦଂଡ ଦେଉଚି, ଆଉ ପ୍ରତି ମାସରେ ଯେ ତିରିଶ ପଇସା ଖର୍ଚ୍ଚାକରିବାକୁ ହେଉଚି ନୀଳାଂବର ବାବୁଂକ ତହବିଲରୁ । ଏ ଗୋଟାଏ ରୀତିମତ କଳାବଜାର ଦେଶରେ ଚେରମାଡ଼ି ବସିଲାଣି । ନା, ନା, ଏହାର ନିଶ୍ଚୟ ମୁକାବିଲା କରିବା ଦରକାର । ଗୃହିଣୀ ଯେପରି ଥିଏଟରରେ ପେଂଥିଏ ଦୂବଘାସର ମୂଳୋତ୍ପାଟନ କରିବାକୁ ଲାଗଂତି, ନୀଳାଂବର ବାବୁ ସେଇପରି ଦୁର୍ନୀତିର ମୂଳପୋଛ କରିବାକୁ ଅଂଟାଭିଡ଼ି ବାହାରି ପଡ଼ିଲେ ।

ହେଉ ପଛେ ପଇସାଟିଏ । ଏହା ପଛରେ ରହିଚି ଗୋଟାଏ ମସ୍ତବଡ଼ ପ୍ରିନ୍‌ସିପଲ୍ । ସେଥିପାଇଁ ଦରକାର ପଡ଼ିଲେ ପ୍ରାଣ ଦେବା ମଧ୍ୟ ଅନୁଚିତ ହେବନାହିଁ । ତାଂକର ମନେ ପଡ଼ିଲା ପଂଦର ବର୍ଷ ତଳେ କଲିକତାରେ ଟ୍ରାମ୍ ଧର୍ମଘଟ କଥା । ଟ୍ରାମ୍ କୋଂପାନୀ ମାତ୍ର ପଇସାଟିଏ ଭଡ଼ା ବଢ଼ାଇ ଦେବାରୁ ପ୍ରାୟ ଏକମାସ ପର୍ଯ୍ୟଂତ ଟ୍ରାମ୍ ଧର୍ମଘଟ ଚାଲିଲା । କେତେ ମୌନ ଶୋଭାଯାତ୍ରା ହେଲା । ଶେଷରେ କେତେଥର ଗୁଳି ଚାଲିଲା । ଛେକଜ୍ଞ ଛେକ ବହୁ ଲୋକ ମଲେ । ଶହୀଦ ହେଲେ । ସେ ଦିନେ ସେମାନଂକ ସ୍ମୃତିରେ କେତେ ଓଜସ୍ୱିନୀ ଭାଷଣ ଦେଇଛଂତି, କେତେ କବିତା ଲେଖିଛଂତି ।

ଆଜି ସେ ଚୁପ୍‌କରି ଏ ଅନ୍ୟାୟ ସହିଯିବେ କିପରି ? ନୀଳାଂବର ବାବୁ ଯୁବାବସ୍ଥାରେ ଦେଶପ୍ରେମୀ ଥିଲେ, କୌଣସି ଏକ ରାଜନୀତିକ ସଂଘର ସକ୍ରିୟ ସଭ୍ୟ ମଧ୍ୟ ଥିଲେ । ବହୁତ ସଭା-ସମିତିରେ ବକ୍ତୃତା ଦେଇଛଂତି, ଧର୍ମଘଟ ଚଳାଇଛଂତି । ବର୍ତ୍ତମାନ ସେ ସବୁ ଧଂଦା

ଗୁଡ଼ା ବ୍ୟବସାୟ କରୁଛନ୍ତି ସତ, କିନ୍ତୁ ତାଙ୍କ ଭିତରର ଦେଶପ୍ରେମୀଟି କିଛି ମରିଯାଇ- ନାହିଁ । ତାଙ୍କର ମନେହେଲା ସେ ବାଧୁକା ପରି ସମାଜର ଭାର ମୁଣ୍ଡାଇଛନ୍ତି । ତାଙ୍କପରି ସମାଜସଚେତନ ଲୋକ ଏ ସବୁ ଦୁର୍ନୀତିର ପ୍ରଶ୍ରୟ ଦେବା ଅନ୍ୟାୟ । ଖାଲି ଅନ୍ୟାୟ ନୁହେଁ; ଏକପ୍ରକାର ଅପରାଧ ମଧ୍ୟ ।

ସେ ବଡ଼ପାଟିରେ ଦାବୀକଲେ, ଗୋଟିଏ ପଇସା ଅଲବତ୍ ଦେବାକୁ ହେବ । କାଗଜବାଲା ମଧ୍ୟ ସମୁଚ୍ଚ ସ୍ୱରରେ ଉତ୍ତର ଦେଲା, ତା ପାଖରେ ରେଜା ନାହିଁ; ସେ କାଗଜ ଫେରାଇ ଦିଅନ୍ତୁ । ନୀଳାମ୍ବର ବାବୁ ତାକୁ ଦୋଷ ଦେବାକୁ ଲାଗିଲେ । କହିଲେ, ଜାଣିଶୁଣି ପାଖରେ ପଇସା ରଖି ଏପରି ଚାଲବାଜି କରୁଛ । ହକର ତାର ପେଣ୍ଟ ପକେଟରେ ଥିବା ସବୁ ରେଜା ବାହାରକରି ଦେଖାଇଦେଲା ଯେ ତା ଭିତରେ ଏକପଇସାର ରେଜାଟି ହକର ଅନୁପସ୍ଥିତି ବଳରେ ଅତ୍ୟନ୍ତ ପ୍ରସିଦ୍ଧ ହୋଇ ଉଠିଛି । ନୀଳାମ୍ବର ବାବୁ ତାଙ୍କ ପଞ୍ଜାବୀ ପକେଟରୁ ସବୁତକ ରେଜା ହାତ ଅଞ୍ଜୁଳାରେ ଖୋଲିକି ଦେଖିଲେ ଯେ ଦୁଇପଇସି ରେଜକଟି ସେଠାରେ ସମ୍ପୂର୍ଣ୍ଣ ରୂପେ ଅନାଗତ । ନୀଳାମ୍ବର ବାବୁ ଅଭିଯୋଗ କଲେ, ରେଜା ନାହିଁ ତ ଆଗରୁ ରଖିବା ଉଚିତ ଥିଲା । ହକର ଜବାବ ଦେଲା ଯେ ସେ ବ୍ୟାଙ୍କ୍ ନୁହେଁ । ମୁକ୍ତତର୍କରୁ କ୍ରମେ ଗାଳି ଦିଆଦେଇ ଆରମ୍ଭ ହେଲା । ନୀଳାମ୍ବର ବାବୁ ତାକୁ ବଦମାସ, ଠକ ଆଦି ମଧୁର ସମ୍ବୋଧନ କରିବାକୁ ଲାଗିଲେ । ହକର ମଧ୍ୟ ବଦଳରେ "ମୋତେ ଯିଏ ଠକର କହୁଛି ସେ ଠେଇଆ ହୋଇଥିବ" ଇତ୍ୟାଦି ଇତ୍ୟାଦି କହିବାକୁ ଛାଡ଼ୁନାହିଁ ।

ଶେଷରେ ନୀଳାମ୍ବର ବାବୁଙ୍କ ହାତରୁ କାଗଜଖଣ୍ଡିକ ଟାଣି ନେଇ ପଇସା ଫେରାଇ ଦେଇ ସେ ସାଇକେଲରେ ଚମ୍ପଟ ଦେଲା । ଖଣ୍ଡେ ଦୂର ଯାଇ ଶୁଣାଇଦେଲା—ଭାରି କାଗଜ ପଢ଼ିଲାବାଲା ଭଏ ! କେବେ କାଗଜ ପଢ଼ିଥିବେ !

ନୀଳାମ୍ବର ବାବୁ ଅପମାନ ବୋଧକଲେ । ଶେଷକଥାଟା ହକର କହିଯିବା ତାଙ୍କର ଆଦୌ ବରଦାସ୍ତ ହେଲନାହିଁ । ସେଇ ବରଂ ଶେଷକଥାଟା କହି ଦେଇ ଚାଲିଯାଇଥିଲେ ଏକପ୍ରକାର ବିଜୟ ଗର୍ବ ଅନୁଭବ କରିଥାନ୍ତେ । ସେ ହକର ପଛରେ ଗାଡ଼ି ଛୁଟାଇଲେ ।

ଦେଖିଲେ, ଖଣ୍ଡେଦୂରରେ ସେ ହକର ଛିଡ଼ାହୋଇ ତା ସାଇକେଲରେ ଆଲୁଅ ଲଗାଉଛି । ନୀଳାମ୍ବର ବାବୁ ଝପ୍ କରି ଗାଡ଼ିରୁ ଓହ୍ଲାଇ ପଡ଼ି ତା ଆଗରେ ଛିଡ଼ା ହୋଇଗଲେ । ତାଙ୍କର ଆଖି ଦୁଇଟା ଜଳୁଥାଏ । ସେ ରାଗରେ ଥରିଥରି ହେଉଥାନ୍ତି । ହକର ବିଚରା ଅବସ୍ଥା ବୁଝିପାରି ଟିକିଏ ଘାବଡ଼ାଇ ଗଲାଣି । ସେ କଦାପି ଭାବି ନ ଥିଲା ଯେ ବାବୁ ଏତେ ରାତିରେ ଗାଡ଼ି ଛୁଟାଇ ତା ପିଛା ନେବେ । ସେ ହତବୁଦ୍ଧି ହୋଇଗଲା । ରାସ୍ତାରେ ମଧ୍ୟ ଲୋକଗହଳି ନାହିଁ । ସବୁ ନିର୍ଜନ । ସେ ଥତମତ ଖାଇଯାଇ ପଚାରିଲା— ଆପଣ କଣ ଚାହାନ୍ତି ?"

ନୀଳାମ୍ବର ବାବୁ କହିଲେ — "କାଗଜ ।"

"କେଉଯାଂକୁ ।"

"ପଇସା ?"

"ନ ଦରକାର ନାଇ ।"

ନୀଳାମ୍ବର ବାବୁଙ୍କର ଉତ୍କଣ୍ଠା ଥପ୍ କିନା ପଡ଼ିଗଲା । ସେ ଏଭଳି ଏକ ଆକସ୍ମିକ ପରିବର୍ତ୍ତନ ପାଇଁ ଆଦୌ ପ୍ରସ୍ତୁତ ନ ଥିଲେ । ସେ ସ୍ୱାଦମତ ଝଗଡ଼ା କରିବା ପାଇଁ ଗଳାକୁ ଝାଳନାଳ ହୋଇ ତା ପଛେ ଛୁଟିଥିଲେ । ତାଙ୍କ ହାତରେ ଥିଲା ବିଦ୍ୟୁତ ଅସ୍ତ୍ର ସେ ଏଭଳି ଏକ ଆଣ୍ଟିକ୍ଲାଇମାକ୍ସ ଆଦୌ ପ୍ରତ୍ୟାଶା କରି ନ ଥିଲେ ।

ତାଙ୍କର ଉତ୍ସାହ, ଉତ୍ତେଜନା, ରକ୍ତସ୍ରୋତ ସବୁ ଲଥ୍ କିନା ତଳେ ପଡ଼ିଗଲା । ଏତେ ସମସ୍ତ ଧରି ଅନ୍ଧାରର ଯେଉଁ ଫର୍ଦ୍ଦା କ୍ରମାଗତ ବଢ଼ି ଚାଲିଥିଲା, ହଠାତ୍ ଯେପରି ତା ଆଗରେ ଆଲୁଅର ଗୋଟିଏ ବଲ୍ବ କିଏ ଆଣି ଦପ୍ କିନା ଜାଳିଦେଲା । ଆଉ ତାର ଶ୍ୱେତିଆ କିରଣରେ ସେ ଜମାଟବନ୍ଧା ଅନ୍ଧାରଖଣ୍ଡ ଯେପରି ଧୀରେ ଧୀରେ ମିଳାଇ ଯିବାକୁ ଲାଗିଲା । ସେ କାଗଜ ଖଣ୍ଡିକ ନେଲେ । ପକେଟରୁ ସବୁ ରେଜକିତକ ବାହାର କରି ଆଙ୍ଗୁଳାରେ ଖେଳାଇ ଖେଳାଇ ଦଶପଇସି ଓ ପାଞ୍ଚପଇସି ଖୋଜିବାକୁ ଲାଗିଲେ । ହକର ମଧ୍ୟ ତା' ପକେଟରୁ ସବୁ ରେଜାତକ କାଢ଼ି ପୂର୍ବପରି ଦୋପଇସିଟିକୁ ଖୋଜିବାକୁ ଲାଗିଲା ।

ନୀଳାମ୍ବର ବାବୁ ଓ ହକର ଉଭୟେ ଏକସମୟରେ ଉଭୟଙ୍କ ଆଡ଼କୁ ହାତ ବଢ଼ାଇ ପଇସା ଦିଆନିଆ ହେବାକୁ ଗଲେ । ହକର ହାତକୁ ପଇସା ବଢ଼ାଇ ଦେଇ ଟିକିଏ ଆଶ୍ଚର୍ଯ୍ୟ କଣ୍ଠରେ ନୀଳାମ୍ବର ବାବୁ କହିଲେ—ଦୋପଇସିଟାଏ କୁଆଡ଼ୁ ମିଳିଲାଣି ।

ହକର ବି ସମଧିକ ଆଶ୍ଚର୍ଯ୍ୟ କଣ୍ଠରେ ଜବାବ ଦେଲା – "ଠିକ୍ ଅଛି । ଆଉ ମୁଁ [illegible] ଦେଖି ପାଇଲିଣି ।"

ନୀଳାମ୍ବର ବାବୁ କାଗଜ କିଣି ଘରକୁ ଫେରିଲେ । □□□

୧୯୭୮ ।

## ଗୋଧୂ

ବାଂକାଟଂକା ପାହାଡ଼ିଆ ରାସ୍ତା ଦେଇ ଚାଲିଛନ୍ତି ସେ । କୌଣସି ଉଦ୍‌ବେଗ ନାହିଁ, ତରବର ନାହିଁ । ସୂର୍ଯ୍ୟଦେବତା ବୁଡ଼ୁବୁଡ଼ୁ ହେଲେଣି । ଆଉ ଟିକିଏ ଗଲେ ପାହାଡ଼ ଢଳରେ ଝୁର୍‌କନା ତୁଣ୍ଡିବ । ମୁଣ୍ଡ ଉପରୁ ତାଳପତ୍ର ଛତାଟି ଏବଂ ହାତରୁ ଲଉ-ଡ଼ୁଂବାର କମଣ୍ଡଳୁଟି ଓ ଆଷାଢ଼ୀ ଖଣ୍ଡିକ ତଳେ ରଖିଦେଇ ସେ ପାଖ ଝୋଡ଼ରେ ଗୋଡ଼ ହାତ ମୁହଁ ଧୋଇ, ସୂର୍ଯ୍ୟଦେବତାଙ୍କ ପୂଜାଅର୍ଚ୍ଚନା କଲେ । ତା'ପରେ କାନ୍ଧରେ ଝୁଲୁଥିବା ଝୁଲିମୁଣିରୁ ଖଣ୍ଡେ ଆଲୁମିନିୟମ ଗିନା ବାହାର କରି ସେଥିରେ କିଛି ଚୁଡ଼ା ଛାଂଦ ବତୁରାଇ କଣ ଦଟା ଖାଇଦେଇ କମଣ୍ଡଳୁରୁ ପାଣି ଦି ଆଂଜୁଳା ପିଇଲେ । ତା'ପରେ ଉଠି ଛିଡ଼ାହେଲେ ଯିବାକୁ । ସେ ପିନ୍ଧିଥିଲେ ଖଣ୍ଡେ ବକ୍‌କଲ, ଘୁଡ଼ରେ ଗୁଡ଼େଇଥିଲେ ଖଣ୍ଡେ ଗେରୁଆ କନା ଏବଂ ଖଣ୍ଡେ ଛିଣ୍ଡା କମ୍ବଳ । ଲୋକମୁହଁରେ ସେ ଧୂଳିଆ ବାବା । ତାଙ୍କର ଡଂବାଳିଆ ଦେହରେ ଧଳା ଧଳା ଲୋମାବଳୀ ଏବଂ ଧଳା ଦାଢ଼ିନିଶ ସାଂଗକୁ ଜଟାବନ୍ଧ ଶୁଭ୍ରକେଶ ନାଳିଚିଆ ସୂର୍ଯ୍ୟ ଆଲୁଅରେ ଝିକି ଝିକି ଦିଶୁଥିଲା । ମନେ ହେଉଥିଲା ଯେତେକ ଗୋଟିଏ ନଗ୍ନଛିଆ ଶିମୁଳିଗଛ ଦେହରେ ଜମିଯାଇଛି ଛିଣା ଛିଣା ତୂଳାର ଅଂଶ ସବୁ, ପବନରେ ଉଡ଼ିଆସି ।

ଖଣ୍ଡେ ଦୂରରେ ଆସୁଥିଲା ଅନାଦି, ତାରପୁର ଗାଁରୁ ମହାଜନର ସନ୍ଧାନ ଧରି । ସେ ଅଲେଖ ଗୋସେଇଁଙ୍କୁ ଦେଖି ଥତମତ ଖାଇ ଛିଡ଼ା ହୋଇଗଲା । ତାଙ୍କର ସୌମ୍ୟ ଶାନ୍ତ ଚେହେରା ଏବଂ ଉଦାର ଉଦାସ ମୁଖମଣ୍ଡଳରେ ଯେତେ ସେମିତି ଗୋଟାଏ ଅଖଣ୍ଡ ଜ୍ୟୋତି ଛପି ରହିଛି । ଅନାଦି ଭାବିଲା, ଏଇ କ'ଣ ସେଇ ଗୁରୁବ୍ରହ୍ମ, ଯାହାଙ୍କୁ ସେ ଏତେଦିନ ଧରି ଶୟନେ ସ୍ୱପନେ ଖୋଜୁଛି ।

ଅନାଦି ଯାଇ ବାବାଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କଲା । ନିଜର ପରିଚୟ ଦେଇ କୁଆଡ଼େ ବିଜେ ହୋଇଛନ୍ତି ବୋଲି ପଚାରିଲା । ବାବା କହିଲେ, ଆଗ ଗାଁ ଶିବମନ୍ଦିରରେ ସେ ରାତିଟା ରହିଯିବେ । ସକାଳେ ଉଠି କୁଆଡ଼େ ଯିବେ । ଅନାଦି ଘର ବି ସେଇ ଗାଁରେ ।

ନିଜ ଗୁରୁ ଗୋସେଇଁଙ୍କ ହାତଯୋଡ଼ ହୋଇ ସେ ରାତିରେ ତାର ସେବା ଗ୍ରହଣ କରିବାକୁ ବିନମ୍ର କଲା । ବାବା ପାଚିଲା ଦାଢ଼ି ତଳୁ ସ୍ମିତହାସ୍ୟରେ ହଁ ଭରିଲେ ।

ଦୁହେଁ ଚାଲିଛନ୍ତି ଧାନ୍ଦାଡ଼ ରାସ୍ତାରେ । ବାବା କେତେବେଳେ ମୁହଁ ଅନ୍ଧାରରେ ଗଛବୃଛର ଛାଇ ଗହଳ ଭିତରେ ଲୁଚିଯାଉଛନ୍ତି ତ କେତେବେଳେ ପୁଣି ଚକ୍ ଚକ୍ ତାରା ଆଲୁଅରେ ଅନାଦି ଆଗରେ ଝଟକି ଉଠୁଛନ୍ତି । ଛାଇଟିଏ ପରି ଅନାଦି ଚାଲିଛି ପଛେ ପଛେ । ଅରଣ୍ୟପୁରରେ ପହଂଚି ବାବା ସିଧା ମହାଦେବଂକ ଦେଉଳଆଡ଼େ ମୁହାଁଇଲେ । ଅନାଦି ମହାଜନର ସଉଦା ବୋଝ ତା ଦୋକାନରେ ଜମା କରିଦେଇ ଦେଉଳରେ ଯାଇ ପହଂଚିଲା । ଖଂଡେ ମସିଣା ଆଣି ବାବାଂକ ବସିବାର ଏବଂ ଶୋଇବାର ଜାଗା କରିଦେଲା । କୂଅରୁ ପାଣିଆଣି ବାବାଂକ ଗୋଡ଼ ଧୋଇଦେଲା । ସେ ଜାଣେ ବାବା ରାତିରେ ଆଉ କିଛି ଖାଇବେ ନାହିଁ । ଟିକିଏ ଗପସପ ପରେ ବାବା ଶୋଇଗଲାରୁ ସେ ନିଜ ଘରକୁ ବାହୁଡ଼ିଲା ।

ଅନାଦିର ମନେ ହେଲା, ତାର ବହୁଦିନର ସ୍ୱପ୍ନ ଆଜି ଯେମିତି ପୂର୍ବଜନ୍ମ ସୁକୃତିରୁ ସାର୍ଥକ ହୋଇଛି । ସବୁ ସେଇ ଗୁରୁଂକ ଦୟା । କେତେ ଗାଁରେ ଅନେକ ଗାଦିରେ ଅନ୍ୟମାନଂକ ସଂଗେ ପାଳିଧରି ଭଜନ କରିବେଳେ ସେ ଗାଉଛି ଭୀମଭୋଇଂକର ଗୁରୁଂକ ପାଇଁ ସେଇ ପ୍ରାଣଉଛୁଳା ଆକୁଳ କ୍ରଂଦନ—

'କେହୁ ଦେଖିଛ କି ନେଇ ନୟନରେ,
ଅତିଥି ବେଶରେ, ବୃଦ୍ଧ ବୟସରେ, ଗୁରୁ ଯାଉଥିଲେ ଏହି ପ୍ରାନ୍ତରେ ।
ମାତା ପିତା ଧାତ୍ରି ଜନମ ହେଲେ ତନ ନ ସେବାଇ କ୍ଷୀର ଖାଇଲେ
ବାପଧନ ବୋଲି ଗେଲ କରୁଥିଲେ, ଗୁରୁ ବସିଥିଲେ ମୋର କୋଳରେ ।'

ତାପରେ ସେଇ ଗୁରୁଂକୁ ଖୋଜିଛି ସେ ବିଶ୍ୱବ୍ରହ୍ମାଂଡ ଯାକରେ । କିଂତୁ କେଉଁଠି ପାଇ ନାହିଁ ତାଂକର ସନ୍ଧାନ । କିଂତୁ ଗୁରୁ ଯେ ଆସିଛଂତି ଏଥିରେ ତାର ସଂଦେହ ନାହିଁ । ଅନାଦି ଭାବେ, ଗୁରୁ ବୃଦ୍ଧ ବ୍ରାହ୍ମଣ ବେଶରେ ଆସଂତେ କି ସେ ତାଂକୁ ଜାବୋଡ଼ି ଧରଂତା, ଛାଡ଼ଂତା ନାହିଁ । ତାଂକୁ କୋଳରେ ବସାଇ ଘନ ଘନ ଚୁଂବ ଦଅଂତା, ତାଂକ ଧଳା ଦାଢ଼ିରେ ମିଶି ଲୀନ ହୋଇଯାଂତା । ସେ ଗୁରୁପ୍ରେମରେ ମତୁଆଲା ହୋଇ ଗାଉଛି:—

"ସଂଶୁଭେ ଯେବେ ଭେଟ ପାଆଂତି କୋଳେ ଧରି ମୁଖେ ଚୁଂବ ଦିଅଂତି ।
ଭଣେ ଭୀମସେନ ପାମର ଅଜ୍ଞାନ ତାଂକୁ ଖୋଜୁଛି ବ୍ରହ୍ମାଂଡ ଯାକରେ ।

ଅନାଦି ଭାବିଲା ନିଶ୍ଚେ ଇଏ ସେଇ ଗୁରୁ । ସେଇ ତାର ଭବସିଂଧୁ ପାରହେବାର ଏକମାତ୍ର ଭେଲା । କ'ଣ ଅଛି ଏ ସଂସାରେ ? ମିଛମାୟା ଏ ସଂସାର । କେହି ନୁହଂତି କାହାର । ସବୁ ଶୁଖା ଖଡ଼ଖଡ଼ । ଚତୁର୍ଥ ବୟସ ହେଲେ ଆସି । ଜନମ ହୋଇବେ ରୋଗ-ରାଶି । କଫ ସନ୍ନିପାତ ସଂଧିବାତ ପିତ୍ତ ତଂଟି ଶୁଖୁଥିବ ଘଡ଼ଘଡ଼ । ପିଂଡରୁ ପରାଣ ଯିବ

ଗ୍ରନ୍ଥି । ଶମଶାନକୁ ନେବେ ଘୋଷାଡ଼ି । ସ୍ତ୍ରୀ ବନ୍ଧୁ ଆଦି କୁଟୁମ୍ବ ସହିତେ, କାଠ ଲଦିଦେବେ ବଡ଼ବଡ଼ । ଦଶମ ଦିନରେ ଦଶଘର । ଏଗାର ଦିନରେ ଷଡ଼ ରସର; ନାନାଦି ବ୍ୟଂଜନ ଦ୍ରବ୍ୟ ସବୁ ଅନ୍ନ ମିଶ୍ରି ଖାଉଥିବେ ଷଡ଼ ଷଡ଼ ।' ଗୁରୁ ହିଁ ତ ତାଙ୍କୁ ଶବଦରୁ ନିଶବଦକୁ, ଜପାରୁ ଅଜପାକୁ ଭେଦ ବତାଇଦେବେ । ସେଇ ତ ଶୁଣ୍ୟମୂଗରେ ନର ଅଂଗରେ ଖେଳୁଛଂତି ।

'ଶୂନ୍ୟମୂଗେ ନର ଅଂଗେ ଖେଳୁଛଂତି ଭକ୍ତ ସଂଗେ ।
ଶୂନ୍ୟ ବୋଲି ଯେଉଁ ଶବଦ ସୃଷ୍ଟି କରି ଘଟେ ସଂପାଦ ।
କହଂତା ବହଂତା ଏ ଦୁଇ ମଧ୍ୟରେ, ବିରାଜେ ବ୍ରହ୍ମ ସେଠାରେ
ଅଲେଖ ନାମ ଅଲେଖ, ଅଶେଷ ଲକ୍ଷଣେ ଲକ୍ଷିତ ଲେଖ ଅଶେଷ ।
ଏ ଶରୀରେ ଦେଖ । (....ବୋଲେ ଭୀମ କଂଧ ଗୁରୁ ପଦାର୍ବିଂଦ କରପତ୍ର ଯୋଡ଼ି ମାଗେ....')

ଅନାଦି ଏ ସବୁ ଭଜନ, ଜଣାଣରୁ ବେଶିକିଛି ବୁଝେନାହିଁ । ବରଂ କହିଲେ ଠିକ୍ ହେବ ଯେ ସେ ଯେତିକି ବୁଝେ ତାଠୁ ବେଶୀ ତାର ଅନୁଭୂତି ରହିଯାଏ । କେଂତେ ବହୁ ଭଜନ ଜଣାଣ ଚୌପଦୀ ସେ ମନେ ରଖିଛି । ଅଲେଖ ଗାଦିରେ ଖାତାବହି ନ ଦେଖି ସେ ଏସବୁ ନିକେ ଅନାୟାସରେ ବୋଲିପାରେ । ସେ ଜୀବନ ସହିତ, ଦୁନିଆ ସହିତ ଆପେଣା ନିଜକୁ ଖାପ ଖୁଆଇ ପାରେ ନାହିଁ । ଭାବେ, ମଣିଷ ଜୀବନ ତ ପାଣିଫୋଟକା । 'କେତେଦିନକୁ ମନ ବାନ୍ଧିଛୁ ଆଂଟ' ? ଉଡ଼ୁଛି ତ ମୁଂଡ ଉପରେ କାଳ ଛଂଚୁଣ । କେଶ୍ ଦେ ଟାଏ ଝାଁପ ମାରିବ, ସବୁ ଶେଷ । ଦୀନକୃଷ୍ଣ ଗୋସେଇଁଂକ ଭଜନରୁ ପଦେ ଅଧେ ମନେ ପଡ଼ିଯାଏ :

'ବାଇମନ ମନକୁ ବୁଝ ।
ଧନ ଦାନ୍ତ ସ୍ନାନ ଆବୋରି ରହିଛୁ ଯେନଠିକେ ତୋତେ ଝଂଟ ପରକା ।
ରଜକ ଯେ ନେବ ପାଲଟା ବସନ ସଂଗ ଛାଡ଼ିବ ଘର ଭରସା ।
ଦଶ ଦ୍ୱାରେ ଦଶ କବାଟ ଲଗିଛି ଏକ କଳଣିକ ପଡ଼ିଛି ଖୋଲା ।
କଳଣି ଫିଟିଲେ କବାଟ ଫିଟିବ ବଂଧୁ କୁଟୁମ୍ବଂକୁ ତୋର କହି ଯା ।

କୋରଂଦା ଗାଦୀକ ଯାଇଂଲ ସେ । ମହିମା ଗୋସେଇଁ ଅବଧୂତ ବାବା ଶରୀରଭେଦ ଭଜନ ବୁଝାଉଥିଲେ, ସେ ଶୁଣିଛି । ଅଚ୍ୟୁତ ଗୋସେଇଁ ଯଶୋବଂତ ଗୋସେଇଁଂକ ଭଜନମାନ ତାର ମୁଖସ୍ଥ ରହିଛି ।

'ମନ ହେ । ବସି ହଂସକୁ ଖେଳ । ହଂସ ଉଡ଼ିଗଲେ ବୁଡ଼ିବ ଭେଳା ।
ଶୁଖିଲି ପୋଖରୀ ମାରେ ଲହଡ଼ି, ତହିଁ ଅଛି ଛୁଆ ଗଲବି ଉଡ଼ି ।
ତଂବ ଗୋଟିକେ ତିନି ତିନି ଛୁଆ, ମୂକାମି ହୋଇଲେ କହିବୁ ଏହା ।
ପୋଖରୀ ଖୋଳିଲେ ଘୃତ ଶ୍ରୀକର, ତଂବ ପାରିଗଲି ଅଂଡଗୀ ହଂସ ।
ସର୍ପକୁ ମଂଡୂକୀ କରୁଛି କେଳି, ଶୁଷ୍କ ବୃକ୍ଷେ ଅଛି ମଂଦାର ଫୁଲ ।

ନଅ ଦ୍ୱାରକୁ ହେ ନଅ କବାଟ, କେଉଁଠାରେ ଅଛୁ କଳପ ବଟ ?
ଗୀତ ଛଅପଦ ଅର୍ଥ ବହୁତ । ଶ୍ରବଣରେ ଭଣିଲେ ଦାନ ଅଚ୍ୟୁତ ।'

କଣ ଏ ପଦ୍ୟ ପଦର ମାନେ ? ଅନାଦି କିଛି ବୁଝି ପାରେ ନାହିଁ । ତଥାପି ତାର ମନେ ହୁଏ ସେ ଅନେକ କିଛି ବୁଝିଛି । ପୁଣି ଯଶୋବନ୍ତ ଗୋସ୍ୱାମୀଙ୍କ ଭଜନ ସେ କଣ ଜାଣି ନାହିଁ ?

'ପଡ଼ିଛି ବନ୍ଧ ତ୍ରିବେଣୀ ଘାଟେ, ବନ୍ଧଫୁଟି ପାଣି ବୋହୁଛି ଆଣ୍ଟେ ।
ବନ୍ଧ ଆୟତନ ବାର ଯୋଜନ । ଯେତେ ବନ୍ଧାଇଲେ ନ ହୋଇ ଟାଣ ।
ବନ୍ଧ ପଡ଼ିଅଛି ମେରୁକୁ ଲାଗି । ବନ୍ଧ ତଳେ ବକ ବସିଛି ଜାଗି ।
ପାଞ୍ଚ ପଧାନ ପଚିଶ ମୂଲିଆ । ଯେତେ ବନ୍ଧାଇଲେ ପଡ଼େ ଗଳିଆ ।
କହେ ଯଶୋବନ୍ତ ବନ୍ଧ ଉଜାଣି, ମନ ପିନ୍ଧା ବନ୍ଧ ପବନ ପାଣି' ।

ଅନାଦି ମହାଜନର ଦୋକାନ ପାଇଁଟି ସାତ କ୍ରୋଶ ଯାଏ ଆଖ ପାଖ ଗାଁର ଅଲେଖ ଟୁଙ୍ଗିରେ । ସେଠି କୀର୍ତ୍ତନ କେତେ ଆଡ଼ୁ କେତେ କେତେ ଭକ୍ତ । ଖଞ୍ଜଣୀ ମାଡ଼ ହୁଏ ଅନେକବେଳ । ଭଜନ ସରେ ରାତି ହୋ' ପହରକେ । ଖଞ୍ଜଣୀ ପଛରେ ଖଞ୍ଜଣୀକ, ଖଞ୍ଜଣୀ ଉତ୍ତର ହୁଏ । ଅନାଦିର ଶତାଧିକ ଭଜନ ମୁହେଁ ମୁହେଁ ପାଠ । ମହାଜନଙ୍କ ବେକ୍ ଗାଳିମନ୍ଦ ଶୁଣିବାକୁ ପଡ଼େ ଅନାଦିକୁ । ସଉଦା ଓଜନ କରିବାରେ ସେ ତଉଲ ଜାଣେ ନାହିଁ । ଭେଲକୁ ଖାଣ୍ଟି ବୋଲି କହି ଚଢ଼ା ଦାମ୍ ଆଦାୟ କରିବାରେ ସେ ଅପାରଗ । ଅଗରୁଅଁଶା ପୋଶପତେଲକୁ ସେ ଖାଣ୍ଟି ବୋଲି ଗରାଖମାନଙ୍କ ମନରେ ବିଶ୍ୱାସ ଜନ୍ମାଇ ପାରେନାହିଁ, ଚମ୍ପୁଅଁଶା ଅଟକୁ ସେ ଖାଣ୍ଟି ବୋଲି ଚଳାଇ ପାରେନାହିଁ । ଏ ସମସ୍ତ ଦୋଷ ସତ୍ତ୍ୱେ ମହାଜନ ତାକୁ ଛାଡ଼ିପାରେ ନାହିଁ । କାରଣ ଆଜିକାଲି ଯୁଗରେ ତା'ଭଳି ଜଣେ ସଚ୍ଚୋଟ ଲୋକର ମିଳିବା ମୁସ୍କିଲ ।

ତା'ପର ଦିନ ସକାଳେ ଅନାଦି ଯାଇ ପହଞ୍ଚିଲେ ବାବାଙ୍କ ପାଖରେ । ବାବା ନିତ୍ୟକର୍ମ ସାରି ନାମ ଜପ କରୁଥିଲେ । ଅନାଦି ଓଳଗି ହୋଇ ତାଙ୍କୁ କେତେ କ'ଣ ଭଲ ଭଲ ଜିନିଷ, ପୁରି ମାଳପୁଆ, ନଡ଼ିଆକୋରା ଖାଇବାକୁ ଦେଲା । ବାବା ଖାଇ ସାରିବା ପରେ ତାଙ୍କ ଗୋଡ ଧରି ତାଙ୍କ ଗାଁରେ ଅନ୍ତତଃ ଦି ଦିନ ମାସ ରହିଯିବାକୁ ଅଳି କଲା । × × ×

କ୍ରମେ ବାବାଙ୍କର ନାମଡାକ ଚାରିଆଡ଼େ ପ୍ରଚାର ହୋଇଗଲା । ବହୁତ ଭକ୍ତ ଆସି ଜୁଟିଲେ । ଦୂର ଦୂରାନ୍ତରୁ କେତେ ଗୁହାରିଆ ଆସି ଭିଡ଼ କଲେ, କାହାର କି ବେମାରି ହୋଇଛି, ସମସ୍ତେ ଆସି ଭିଡ଼ ଜମାଇଲେ । ନିଜେ ମହାଜନ ଉକାଶରାମ ସେଦିନ ପିତଳ ଥାଳିରେ ଯଂଗ୍ରୁ ନେଇ ଆସି ପହଞ୍ଚିଲେ ।

ବାବା ସମସ୍ତଂକୁ ସ୍ନିତ ହାସ୍ୟରେ ଆଶ୍ୱସନା ଦଅଂନ୍ତ, ସାଂନ୍ତ୍ୱନା ଦଅଂନ୍ତ । ପ୍ରଭୁ ଜଗନ୍ନାଥଂକ କୃପାଭିକ୍ଷା କରିବାକୁ ଉପଦେଶ ଦଅଂନ୍ତି । କହଂନ୍ତି "ମହା ନିତ୍ୟେ ଖେଳ ଦେଖ ଜଂବୁଦ୍ୱୀପେ ହେ, ଶାସ୍ତ୍ରାର୍ଥ ପ୍ରକାଶିତ ବାହ୍ୟରୂପେ ହେ । × × × ଭଣେ ଭୀମସେନ ଖେଇ, ସମସ୍ତେ ପାଇବେ ନାହିଁ; ସଦଜ୍ଞାନ ମୁକ୍ତପଥ ଗୁରୁମୁଖେ ଦେ ।"

ବବା ସମସ୍ତଂକୁ ଧୀର ସ୍ୱରରେ ବୁଝାଂନ୍ତି—ସେଇ ଖଂଡପଥ, ସ୍ଥାନପଥ, ସେଇ ପୁଣି ଜଗତ୍‌ପତି ଜଗନ୍ନାଥ । ସେ ଆକାର, ସେ ନିରାକାର/ଅଣ ଚାର । ସେ ସଗୁଣ ସେ ନିର୍ଗୁଣ, ସିଏ ଅଜପା ପୁଣି ଜପା । ସିଏ ନିଃକ୍ଷର ପୁଣି କ୍ଷରାକ୍ଷର, ଜ୍ୟୋତି ଏବଂ ଅଜ୍ୟୋତି ।

"ସଂଜ୍ୟୋତି ତେଜ ତୋର                    ନାହିଁ ଦେଖିଛୁ ଧର
        ଅଜ୍ୟୋତି ବ୍ରହ୍ମ ତହିଁ ଖେଳୁଛୁ ହେ ।
ରୂପ ପ୍ରାପ୍ତ ହୋଇଛୁ                         ଅରୂପେ ବହରୁଛୁ
        ଅଦୃଷ୍ଟି ଅସ୍ଥାନରେ ବସିଛୁ ହେ ।
ଅବ୍ୟକ୍ତ ହୋଇଅଛୁ                          ବଚନ ନ କହୁଛୁ
        କୃପାମୟ ଶରୀର ବହୁଛୁ ହେ ।
ନିଃକ୍ଷରରୁ କ୍ଷରୁଛୁ                          କ୍ଷରାକ୍ଷର ବୋଲୁଛୁ
ଭଣିଲେ ଭୀମ କଂଧ                        ସେ ସେଉଁ ପୂର୍ଣ ନଂଦ
        ପଦାରବିଂଦୁ ପଦ କ୍ଷରୁଛୁ ହେ ।

ପୁଣି ବାବା ଭଜନ ଗାଆଂନ୍ତି—

ଲାଗିଅଛୁ ବ୍ରହ୍ମଅଗ୍ନି ଅଲେଖ କୁଂଡେ ।
ଧାପ ଦେଉଅଛୁ ଏକୋଇଶ ବ୍ରହ୍ମାଂଡେ । (କହେ ଭୀମସେନ ଖେଇ···)
ଅନାଦ, ଅଉ ଆଉ ଭକ୍ତମାନେ ପାଳିଧରି ଗାଆଂନ୍ତି—
ମୂଳ ଶୂନ ଘରକୁ କର ବିବେକ
ନିରବଦ ଭୁବନ, ଘୁ ଘୁ ନାଦ ଗର୍ଜନ ଅଗାଧ ସାଗର
ନାହିଁ ତହିଁ ନୀର ପୂରି ରହିଅଛୁ ହୃଦ ପଂକ ।
ଏକାକ୍ଷର ନିର୍ବେଦ, ସରି ଅସୁଅଛୁ ପଦ
ଭଣେ ଭୀମସେନ ଖେଇ ମୂରୁଖ ।

ଏହାପରେ ନାନା ତତ୍ତ୍ୱ ବଖାଣ ହୁଏ; ଧ୍ୟାନ ଯାଇ ଲାଗିଛୁ ଭ୍ରମର ଗୁଂଫାରେ ସାଉଁଲ ଅର୍ଗଳ ମଧ୍ୟରେ ଭ୍ରମର ସୁଖରେ ଲୀଳା କରୁଛୁ ।

"ଲେଉଟ ପବନ ପାଲଟି ବୋଲୁଛୁ ସୂତମୁନେ ତାର ବାଟ
ଡାଳ ଗ୍ରେପା ପ୍ରାପ୍ତ କବାଟ ଲାଗିଛୁ ଚଳେ ମତ୍ତଗଜ ଥାଟ ।

ହଂସ ଘରେ ହଂସ ହଂସୁଳୀ ଅଛଂତି ଦୁହେଁ ଦୁହଂକ ଅଦୃଶ୍ୟ
କହଇ ମୋହନ ଗୁରୁ ସେବା କଲେ ଅଦୃଶ୍ୟ ହୋଇବ ଦୃଶ୍ୟ ।"

(ଏ ମୋହନ କଏ ? ଜଣେ ବୃଢ଼ା ଭକ୍ତ କହିଲେ, ସେ ତାଂକୁ ତାଂକ ପିଲାବେଳେ କଳୌକାରେ ରହିବାର ଶୁଣିଥିଲେ । ଏବେ କୁଆଡ଼େ ଶିଶୁ ଅନଂତଂକ ସଂଗେ ଖଂଡଗିରି ଗୁଂଫାରେ ଗୋପ୍ୟ ହୋଇ ରହିଛଂତି । )

ତା'ପରେ ଗୁନ୍ଦୋ ଖଂଜଣୀ ମାଡ଼ ।

"ଭଜ ମନ କଳା କହ୍ନାଇ, ଭଜିଲେ ଏ ଦୁଃଖ ରହିବ ନାହିଁ ।
ନିଶବଦ ଘରେ ଶବଦ ଶୁଭୁଛି ଅଣାକାର ଅଛି ଅକାର ହୋଇ ।"

ଏହାପରେ ଆରଂଭ ହୁଏ ଅଚ୍ୟୁତଂକ 'ଶୂନ୍ୟରଭେଦ' ।

"ଆରେ ଭଜମନ, ଭଜି ପାରିଲେ ପାଇବୁ ଦରଶନ ।
ତ୍ରିବେଣୀ ବନ୍ଧୁଛି ତିନିଧର, ବନ୍ଧଂତା ନଇକ ଅସ୍ତକର
ବଂକୁନାଳେ ମଣି ଉଠିବ ଜଳାଣି, ଉଡ଼ିଯିବ ଚୋର ହଂସା ଘର ।"

ବାବା ବୁଝାଇ ଦଅଂତ : ସେଇ ଅଣାକାର ବ୍ରହ୍ମ ହିଁ ଈଶ୍ୱର, ସେ ଶୂନ୍ୟପୁରୁଷ । ହେଲେ ତାଂକର ରୂପ ଅରୂପ ଦୁଇଟି ସ୍ୱରୂପ । "ଅଦେଖା ଦେଖିଲେ ସାର, ଅମପା ମାପିଲେ ପାର । ଅଚହ୍ନାକୁ ଚହ୍ନି ଭଜ ଅଣରୂପର । କହେ ଭୀମ ହୀନ ଦାସ, ଅବନା ମଂଡଳେ ପଶ, ତ୍ରିବେଣୀ ଲଗାଇ ଉଠ ଶୂନ୍ୟ ଶିଖର ।"

ସେ ହେଉଛଂତ ସ୍ଥିତ ଯୋଗ ପୁଣି ଅଣସ୍ଥିତ । ଭୀମଭୋଇ କହି ନାହାଂତ– "ସ୍ଥିତ ବସ୍ତିରେ ନ ଥିଲା । କେଉଁ ଭିତରେ ରହିଲା । ତାଂକୁ ଯେ ଭେଟାଇ ଦେବ ତା' ପାଦ ଧରିବ ଯାଇ ।"

ତା'ପରେ ବାବା ଚକ୍ଷୁ ଅର୍ଦ୍ଧନିମୀଳିତ କରି ଗାଆଂତ –"ଅନଂତ ଖଂଜଣୀ ବାଜେ ବ୍ରହ୍ମାଂଡ ଉଛୁଳି ଗୋ, ଗ୍ରହ ଗ୍ରହ ନିରଂତରେ ମହା ନତ୍ୟର ମଂଡଳୀ ଗୋ" । ହାୟ ! ହାୟ ! ସିଦ୍ଧପୁରୁଷ ଭୀମ କଂଧ ! ଶେଷରେ କହିଲେ କଣନା–'ନଅଛିଠା ପାଦ, ନିଷ୍ଟମ ନିବେଦ କଳ୍ପନା ନ କର ଧର ପାଦପଦ୍ମ । ନ ବାଂଗୁ ଦର୍ଶନ କାଯ୍ୟ ପ୍ରସନ୍ନ । ଆଶା ଭରସା ନ ଦେଇ ହେ ।"

ଯେଉଁଦିନ ଅଚ୍ୟୁତ ଗୋସେଇଁଂକ ଜନ୍ମତିଥି । ଖୁବ୍ କୋରରେ ଧୂନି ଲଗିଥାଏ । ଭଜନ ଗୁଳଥାଏ ଯମାପୋଟ । ଦୀପରୁ ତେଲ ସରଗଲେ ପୁଣି ଟିକଏ ତେଲ ଢଳାଯାଉଥାଏ । ମଂଡଳୀ ଭିତରେ ଚିଲମ ବୁଲୁଥାଏ । ହାତମୁଠା ସଂଧିରେ ଗୋଟାଏ ଗୋଟାଏ ଟାଣଦେଇ ଜଣେ ଆଉ ଜଣଂକ ହାତକୁ ଚିଲମ ବଢ଼ାଇ ଦେଉଥାଏ । ସମସ୍ତଂକ ଆଖି ଧୂଁଅରରୁ ଲାଲ ହୋଇଆସିଲାଣି । ସଂସାର ଶୂନ୍ୟ ମଂଡଳ ପରି ପ୍ରତେ ହେଉଛି । ତା'ର ଭିତରେ ବା ।

ଗୁହ୍ୟାଦ୍ୟାନ୍ତି ଲାଗି ଲାଗି ଆଁଖିକୁ ବିସ୍ତାରିତ କରି, ଏହା ନାଡ଼ୀର ରହସ୍ୟ । ଇଡ଼ା, ପିଂଗଳା ଓ ସୁଷୁମ୍ନା ଭିତରେ ପବନ ଚାଳନା କରି ମୂଳାଧାରରେ ଶୋଇଥିବା କୁଣ୍ଡଳିନୀ ସାପକୁ କେମିତି ଉଠାଇବାକୁ ହୁଏ—କେମିତି ତାକୁ ଊର୍ଦ୍ଧ୍ୱକୁ ଚାଳନା କରିବାକୁ ହୁଏ । ସେହି ତ ତ୍ରିବେଣୀ ଘାଟ, ସେଇଠି ଶୋଇଛି ଅହି । ତାକୁ ତାଳୁକୁ ଉଠାଇବାକୁ ହେବ—ବ୍ରହ୍ମରଂଧ୍ରରେ ପ୍ରବେଶ କରାଇବାକୁ ହେବ । ତେବେ ତ ଯାଇ ମୁକ୍ତି ।

ଏତିକିବେଳେ ଜଣେ ଆରଂଭ କରିଦେଲେ ଖଂଜଣୀ ପଚରା, ଖଂଜଣୀ ଉତ୍ତର । ଖଂଜଣୀ ପଚାରୁଛି ଖଂଜଣୀକୁ, କହ, କହ, ସେ ଖଂଜଣୀ କେଉଁଠାରେ ଜନ୍ମହେଲା ? କିଏ କେଉଁଠାରେ ଥିଲା, କିଏ ସେ ଗଢ଼ିଲା, କେଉଁଠାରେ ? ତାର ପର୍ବ ପ୍ରତି ମୋଟ କେତେ ? ତାର ବହଳ କେତେ ପଲ ? ଖଂଜଣୀରେ କେଉଁ ଚର୍ମ ଛାଉଣି ହୋଇଛି ? ଗୋଧିଚର୍ମ ବୋଲି ତ ସମସ୍ତେ ଜାଣନ୍ତି । କହରେ ଭାଇ, ଗୋଧିର ଦୁଇଟା ଜିଭ କାହିଁକି ? ଶେଷରେ ଗୋଧିଟି ତାଳ ଛୁଂଚେ ।

**ଖଂଜଣୀ ପଚରା :**

"ଗୋଧିଜାତି ହେ । କେଉଁଠାରୁ ହେଲା ଉତପତ୍ତି ହେ ।
କିଂପାଇ ସେ ହରଠାରେ ପୂଜା ସେ ପାଇଲା ?
ଦେବତା ଆଳୟେ ସେହୁ କିପାଁଇ ବାଜିଲା ?
କେଉଁ ମଂଶ ହେ । କେମଂତ ସେ ହୋଇଲା ପରଶ ହେ ।"

**ଖଂଜଣୀ ଉତ୍ତର** : (ଯାହାର ମର୍ମ ଏହିପରି) : ଦିନେ ଈଶ୍ୱର ଘୋର ବନକୁ ଚାଲିଲେ । ସେଦିନ ବୈଶାଖ ଶୁକ୍ଳ ପଂଚମୀ । ଈଶ୍ୱର ଘୋର ବନରେ କେଳି କଲେ । ସେଠାରେ ଆଂବ ଜଂବୁଳ ବୃକ୍ଷମାନେ ଈଶ୍ୱରଂକ ଲୀଳା ଦେଖିଲେ । ଗନ୍ଧର୍ବମାନେ ପଲ୍ଲବିଲେ । ବ୍ରହ୍ମା ଆଦି ଦେବଗଣ ଈଶ୍ୱରଂକ ଲୀଳା ଦେଖିବାକୁ ମନକଲେ । ସେମାନେ ଆସି ସ୍ତୁତି କରିବାରୁ ହରି ସ୍ମରଣରେ ଈଶ୍ୱରଂକ ଚେତା ଫେରି ଆଇଲା । ସେ କୋପାନଳ ନେତ୍ରରେ ଗୃହାଂତେ ବନ ଲତା ହୁତାଶନରେ ଜଳିଗଲେ । ଗୋଟିଏ ବୃକ୍ଷ ଦେବତାଂକ ମେଳରେ ଥିବାରୁ ରହିଗଲା । ଦେବତାଏ ତାର ଦେବଦାରୁ ନାମ ଦେଲେ । ଧୂର୍ଜଟି ତ୍ରିଶୂଳ ବାହାର କରି ତାହା ମୂଳରୁ ଛେଦିଲେ । ଚବିଶ ଆଂଗୁଳ କରି ମୂଳକୁ ରଖିଲେ । ବାଉଂଶ ଆଂଗୁଳକୁ ମଝିରୁ ବେନି ଭାଗ କଲେ । ଖଂଡିକରେ ଶିବ ତହୁଁ ଡଂଡ଼ିମ ଭିଆଇଲେ । ଅନ୍ୟ ଖଂଡିକରୁ ସମସ୍ତେ ମିଳି ପାଂଚ ଖଂଡେ ତିଆରିଲେ । କେଉଁ ଚର୍ମରେ ଛାଉଣି ହୋଇବ ବୋଲି ଈଶ୍ୱରଂକୁ ପଚାରଂତେ ଈଶ୍ୱର କହିଲେ ଗୋଧି ଚର୍ମରେ ଛାଉଣି କର । ଗୋଧିର ଜନ୍ମ ଗଂଗାରୁ ହୋଇଛି ।

"ଈଶ୍ୱର କହିଲେ କଥା ଶୁଣ ମନ ଦେଇ
ଗଂଗାରୁ ଗୋଧି ଜନମ ହେଲା କେମଂତାଇ ।
ଏକାଦିନେ ସେ । ଅଜଗର ଆସିଣ ସେ ସ୍ଥାନେ ହେ ।

ଗଂଗାରେ ସନ୍ଧାଣ ଅଜଗର ଭସିଯାଂତେ
କୁଂଭୀର ଗୋଟିଏ ଆସି ମିଳିଲା ଅଗ୍ରତେ ଯେ ।
ଅଜଗରକୁ ଗିଳିବା ପାଇଁ ହେ । ଊର୍ଦ୍ଧ୍ୱମୁଖ ହୋଇ ଅଜଗର ଭସିଗଲା ।
କୁଂଭୀର ପୃଷ୍ଠ ଉପରେ ଚଢ଼ିଣ ବସିଲା । କୁଂଭୀର ସେ ଅଜଗର ପାଂରନ୍ତି ହୋଇଲା ।
କୁଂଭୀର ଉଦରୁ ଗୋଧି ଜନମ ହୋଇଲା । ଏଥୁ କରି ହେ ।
ଦୁଇଗୋଟି କହୁ ଯେ ତାହାର ହେ ।"

ଗୋଧି ଗଂଗାରୁ ଭସିଯାଇ ଲବଣ ଜଳରେ ଲାଗିଲା । ମାତ୍ର ଲବଣ ଜଳ ତାକୁ ସୁହାଇଲା ନାହିଁ । କେଣୁ ସେ କୂଳରେ ବାସ କରି ରହିଲା । ହରି ଭୋଇ ତାକୁ ଖୋଜି ଆଣି ମାରି ପକାଇଲା ।

"ହରି ଭୋଇ ଖୋଜି ଗୋଧି ଗୋଟିଏ ଆଣିଲା ।
କାଟିନେଇ ଗୋଧିଚର୍ମ ଛାଲି ପକାଇଲା ।
ଖୋଳେ ନେଇ ହେ । କପି ଥ ବୃକ୍ଷର କ୍ଷୀର ଦେଇ ହେ ।
ହରିନାମ ମହାମଂତ୍ର ଉଚ୍ଚାରଣ କଲା । ପବନ କରିଣ ହରିନାମ ଉଚ୍ଚାରିଲା ହେ ।
ଗାଁ ସ୍ତନ ହେ, କରଂତେ ବାଜିଲା ଘନ ଘନ ହେ ।"

ଠିକ୍ ସେତିକିବେଳେ ଦୂରକେଶ ଦୂରର କନ୍ଦମଳ ଗାଁରୁ ଜଣେ ଭକ୍ତ ପାଣୁଆ ଭୋଇ ଧଇଁସଇଁ ହୋଇ ଆସି ପହଂଚିଲା । ସେ ସମସ୍ତଂକୁ ଚମକ ଲଗାଇଦେଇ କହିଲା ଆଜ୍ଞା, ଆମ ଗାଁରେ ଦୁ'ଜଣ ବାବାଜିଂକୁ ପିଟିପିଟି ଖଂଡ଼ିଆ ଖାବଡ଼ା କରିଦେଲେଣି । ଜଣେ ବଂଚିବ କି ନାହିଁ ସନ୍ଦେହ । ପୁଲିସ ଆସି ତନ ତନା ତଦଂତ ଚଳାଇଛନ୍ତି । କେତେଜଣ ଗାଁ ଲୋକଂକୁ ଧରପଗଡ଼ କଲେଣି ।

"କ'ଣ, କଥା କଣ, କ'ଣ ହେଲା" ସମସ୍ତେ ଏକ ସ୍ୱରରେ ପଚାରିଲେ । ପାଣୁଆ କହିଲା, ଆଜ୍ଞା, ନବ୍ରଜପୁରରେ ସେ ଯେଉଁ ପୋଲ ତିଆରି ହେଉଛି, ସେଠି ବଳିଦେବା ପାଇଁ ଦୁ'ଟା ଟୋକାଂକୁ ବାବାଜି ଦୁ'ଜଣ କ'ଣ ଗୋଟାଏ ଫୁଲ ଶୁଂଘାଇ ଦେଇ, ଧରିନେଇ ଯାଇଥିଲେ । ଗୋଟାଏ ବଣରେ ଲୁଚାଇ ରଖିଥିଲେ । ଆଜି ରାତିରେ ବଳି ଦେଇଥାଂତେ । ଗାଆବାଲା ସଂଧାନ ପାଇ ପିଲା ଦିଟାଂକୁ ଉଦ୍ଧାର କରିଛଂନ୍ତି । ଆଉ ବାବାଜି ଦୁ'ଜଣଂକୁ ଧରିଛଂନ୍ତି । ସେଦିନ ଭଜନଘରରେ ଭଜନ ସାରି ଯିଏ ଯାହାର ଘରକୁ ଫେରିଗଲେ ।

ସାରା ଦୁଇ ତିନ ଦିନପରେ ଗ୍ରାମଆଡେ ନାନା ଗୁଜବ ରଟିବାକୁ ଲାଗିଲା । କିଏ କହିଲା, ସେଇ ପୋଲର କଂଟ୍ରାକ୍ଟର, ଜଣେ ପଂଜାବି, ଏ ବାବାଜି ଦୁହିଂକୁ ପଠାଇ ପିଲା ଦିଟାଂକୁ ବଳିଦେବାପାଇଁ ଧରି ନେଇ ଯାଇଥିଲା । ପୁଣି ଥୋକେ ରଚନା କଲେ, ଆସାମ ଚା ବଗିଚାର କଣେ କୁଲି ଠିକାଦାର ଆସାମ ଚାଲାନ୍ କରିବା ପାଇଁ ବାବାଜିଂକୁ ଦେଇ ପିଲାମାନଂକୁ ଧରି ନେଇଯାଉଛି । କିଏ କହିଲେ, ମା ବାପ ଜାଣିଶୁଣି ପିଲାଂକୁ ବିକି ଦେଉଛଂନ୍ତି, ମୋଟା ଟଂକା ଲୋଭରେ । ଇତ୍ୟାଦି, ଇତ୍ୟାଦି ।

କିଛିଦିନ ପରେ ଅନେଖପୁର ପାଖରୁ ଗୋଟିଏ ପିଲା, ଲୋଚନା, ହଜିଲା । ସମସ୍ତଙ୍କ ତୀକ୍ଷ୍ଣ ଦୃଷ୍ଟି ବାବାଙ୍କ ଉପରେ ପଡ଼ିଲା । ସେ ଚଉଦ ପନ୍ଦର ବର୍ଷର ଟୋକାଟା କୁଆଡ଼େ ଦି'ଘଣ୍ଟା ଦିନ ଥିଲେ ତା ବାପ ସଙ୍ଗରେ ଅଲେଖ ଟୁଙ୍ଗିକୁ ଆସିଥିଲା, ବାବାଙ୍କ ପାଖକୁ ଭଜନ ଶୁଣିବାକୁ । ବାବା ଉଦ୍‌ବିଗ୍ନ ହୋଇ ଉଠିଲେ । ତାଙ୍କ ମୁହଁରୁ ସେ ସ୍ମିତହାସ ଲିଭିଯାଇଛି । ଧଳାଧଳା ଦାଢ଼ି ନିଶ ତଳେ ସେଇ ଜକ ଜକ ମୁରୁକି ହସ ଆଉ ବାହାରୁ ନାହିଁ ।

ବଡ଼ ସକାଳୁ ଗାଁଆଡେ ହଲ୍ଲା ହେଲା, ବାବା ଆଶ୍ରମରେ ନାହାନ୍ତି । ତାଙ୍କର ଜିନିଷପତ୍ର, ଝୁଲିମୁଣି, ତାଳପତ୍ର ଛତା, ବାଡ଼ି, କମଣ୍ଡଳୁ କିଛି ନାହିଁ । ଅନାଦ ଆସି ବାବାଙ୍କୁ ନ ଦେଖି ମୁଣ୍ଡରେ ହାତ ଦେଇ ବସିଲା । ଗାଁ ଲୋକେ ଆସି ବାବାଙ୍କ ଗୁଣ ସୁମରି ବାହୁନିଲେ । କେହି କେହି କାନ୍ଦ ପକାଇଲେ । ହାଣ୍ଡିରେ ପଖାଳଭାତ ଗଣ୍ଡାଏ ଥିଲା, ସେମିତି ରହିଛି । ବାବା କିଛି ନଖାଇ ଭୋକିଲା ପେଟରେ ଚାଲିଗଲେ ।

ସଞ୍ଜବେଳକୁ ନାଥ ଜେନା ଆସି ଖବର ଦେଲା : ସେ ବାବାଙ୍କୁ ପାଞ୍ଚକୋଶ ଦୂରରେ ଶରଧାପୁର ପାଟରେ ଦେଖି ଆସିଲା । ବାବା ମୁହଁ ଶୁଖାଇ ଏକୁଟିଆ ଚାଲୁଛନ୍ତି । ତାଙ୍କ କାନ୍ଧ ଉପରେ ଝୁଲିମୁଣିରେ କେତେଖଣ୍ଡ ଲୁଗା, କମ୍ବଳ ଆଉ ଆଠାବାଡ଼ିଟା ଝୁଲୁଛି । ଦୂରରୁ ଦେଖିଲେ ମନେହେବ ସେମିତି ଗୋଟାଏ ଗୋଧି ବସିଛି ।

ନାଥିଆର କଥାଶୁଣି ଗାଁ ଲୋକେ ହାୟ ହାୟ କରିବାକୁ ଲାଗିଲେ ।

ଏହାର କିଛିଦିନ ପରେ ଥୋକେ ଲୋକ କୁହାକୁହି ହେଲେ : ବାବା ଲୋଚନାକୁ ମନ୍ତ୍ର ବଳରେ ଗୋଧି କରିଦେଇ ନେଇଗଲେ । ଖଞ୍ଜଣୀ ବନେଇବେ । □□□

୧୯୮୦

—୦—

# ପଣ୍ଡିତଙ୍କ ମୃତ୍ୟୁ

ପୋଥାଳ ଗ୍ରାମର ପଣ୍ଡିତ ବିଶ୍ୱମ୍ଭର ନନ୍ଦଙ୍କର ନିଜ ମୃତ୍ୟୁ ବିଷୟରେ ଗୋଟାଏ ସ୍ପଷ୍ଟ ଧାରଣା ଥିଲା । ସେ କେତେବେଳେ ମରିବେ, କେଉଁଠି ମରିବେ ଏବଂ ସେତେବେଳେ ଆର୍ଦ୍ରା କି ମୂଳା କେଉଁ ନକ୍ଷତ୍ରର କେତେ ଦଣ୍ଡ; କେତେ ଲିତା ଯୋଗ ହୋଇଥିବ, ଏସବୁ କଥା ତାଙ୍କ ଜିଭ ଅଗରେ ଥିଲା । ସେ ଗ୍ରାମବାସୀଙ୍କୁ ଶୁଣାଇ ଶୁଣାଇ କହନ୍ତି, ଏଡ଼େ ବଡ଼ ଗାଁ ଟାରେ କେହି ଜଣେ ହେଲେ ତାଙ୍କୁ ରକ୍ଷା କରି ପାରିବେ ନାହିଁ; ସେଇ ହାତଗଣ୍ଠିଆ ନଈଟାରେ ବାଙ୍କ ନାଳନଳରେ କିଏ ଗୋଟାଏ ତାଙ୍କୁ ମାଡ଼ି ବସିବ । ସିଏ ଯେତେ ଡାକିଲେ କେହି ଶୁଣିବେ ନାହିଁ, ଭେଣ୍ଡା ପୁଅଟା କିଣ କରୁଛି କହି । ତା'ପରେ ସେ କହିଯାଆନ୍ତି ସେଦିନ କି ତିଥି ବାର ଥିବ, ଚନ୍ଦ୍ରମୁଣ୍ଡି ସ୍ଥାନେ କି ନାହିଁ, ଯାତ୍ରଚନ୍ଦ୍ର କେତେ ଯୋଗ ହୋଇ କେତେ କେତେ ବାକି ଥିବ, ଶନି ଚତୁର୍ଥରେ ଥିବେ କି ନାହିଁ ଇତ୍ୟାଦି ଇତ୍ୟାଦି । ସେଦିନ କୁଅଡ଼ ଥିବ ମାର୍ଗଶିର ଶୁକ୍ଳ ଦ୍ୱାଦଶୀ, ଖରାଦିଆ ଦି'ପହର । ଆଉ ଗଳାବେଢ଼ରେ ଗୋଟାଏ ଅଣ୍ଡିରି ବାଳୁଆ ବୋଦ ନୋବାଇ ଯାଉଥିବ ତାଙ୍କ ବାଡ଼ି ଦୁଆର ମୁହଁରେ ।

ସେ ଅବସନ୍ନ ମନରେ ଦାଣ୍ଡପିଣ୍ଡାରେ ବସି ସାମନା ଟାଙ୍ଗଣାରେ ଥିବା ଉଗ୍ର ଉଇହୁଙ୍କାଟା ଆଡ଼କୁ ଅନାଇ ରହନ୍ତି । ହୁଙ୍କା ଉପରେ ପିମ୍ପୁଡ଼ିଙ୍କ ଧାର ଲାଗିଛି, ପୁନାଙ୍ଗ ଗଛରୁ ହଳଦିଆ ଫୁଲ ଝଡ଼ିପଡ଼ି ଘରଆଡ଼ ଘୋଡ଼ାଇ ଦେଇଛି । ପାଖ ନାଗଅଇଣ ବଣରେ କଙ୍କତିଏ ବସି ଖରା ପୋଉଁଚି । ସେ ଫାଙ୍କା ବଲବଲ ଆଖିରେ ସେଇ ଦୃଶ୍ୟଟି ଦେଖନ୍ତି, ଆଉ ମନକୁ ମନ କଣ ଗୁଣୁଗୁଣୁ ହୋଇ, ଆଙ୍ଗୁଠିରେ ତିଥି ନକ୍ଷତ୍ର ଗଣନ୍ତି, ଭୂଇଁରେ ଗାର କାଟନ୍ତି ।

ତାଙ୍କ ଧ୍ୟାନ ଭାଙ୍ଗିଯାଏ ଯେତେବେଳେ ଦି'ଟା କୁକୁର ଆସି ତାଙ୍କ ଚଟାଚଟି ହୋଇ ମୈଥୁନ ଆରମ୍ଭ କରିଦିଅନ୍ତି । ସେ ପିଣ୍ଡାରୁ ଖପ୍ କିନା ଡେଇଁପଡ଼ି ଠେଙ୍ଗା ମାରିମାରି କୁକୁର ଦି'ଟାଙ୍କୁ ଗାଁ ଭିତରକୁ ତଡ଼ି ନେଇଯାଆନ୍ତି, ତାପରେ କେତୋଟା ପିଲା ତାଙ୍କୁ ଘେରିଯାଇ ହୋ-ହୋ କଲେ ସେ ଝପଟି ଘରକୁ ପଳାଇ ଆସି ଘର ଭିତରୁ କବାଟ କିଳି ଦିଅନ୍ତି ।

ବିଶ୍ୱମ୍ଭର ନନ୍ଦ ଥିଲେ ସେ ଚକଡ଼ାର ଜଣେ ନାଉଁଆ ବ୍ରାହ୍ମଣ । ମନ୍ତ୍ର ତନ୍ତ୍ର, ପୂଜାପାଠ ଓଷାବ୍ରତ ଏବଂ କିଛି କିଛି ଗୁଣିମୁଣି ଓ କବିରାଜି ବିଦ୍ୟାରେ ସେ ଅଞ୍ଚଳରେ ଥିଲା ତାଙ୍କର ଯେଉଁପରି ନାମଯଶ, ସେଇପରି ହାତଯଶ । ସେ ସକାଳୁ ଉଠି ଗାଧୋଇ ପାଧୋଇ ମଠାଲୁଗା ପିନ୍ଧି ଜପରେ ବସୁଥିଲେ । ମନ୍ତ୍ରଧ୍ୱନିରେ ଘର ଝୁଙ୍କି ପଡ଼ୁଥିଲା । କୁମ୍ଭକ, ରେଚକ, ପୂରକଠାରୁ ଆରମ୍ଭ କରି ପ୍ରାଣାୟାମର ଷଟ୍‌ଚକ୍ର ଭେଦ ଏବଂ କୁଳକୁଣ୍ଡଳିନୀ

ସାଧନା ପର୍ଯ୍ୟନ୍ତ ସେ ଯାଇଥିଲେ । ତାପରେ ଅଳ୍ପ ଦିନ ଜଳଟିଆ କରି ସେ ମୂଳିଆମୂଲିଆଙ୍କୁ ବଳକୁ ପଠାଇ ଦେଇ ପ୍ରାୟ ଦୁଇ ଦିନ ଘଂଟାରେ ଯାଇ ବାହାରେ ହାଜର ହେଉଥିଲେ । ଇଆ ଭିତରେ ବହୁ ଲୋକ—ଖାଲି ସେ ଗାଆଁର ନୁହେଁ, ଆଖପାଖ ଦଶଖଂଡ ମୌଜାର ଆସି ତାଂକୁ ଭେଟୁଥିଲେ । କାହାର ପିଲାକୁ ପୋହଳା ମାରୁଛି, କାହା ବୋହୂର ଗର୍ଭପାତ ହୋଇଯାଉଛି, କାହାଘରେ ହୋମ ବା ଗ୍ରହପୂଜା ହେବ, କାହା ଘରେ ବା ବାହାବ୍ରତ; ଏଇପରି ନାନା ବିଷୟରେ ତାଂକର ସାହାଯ୍ୟ ଲୋଡ଼ା ହେଉଥିଲା । ତାଂକ ବଟୁଆ ଭିତରେ ଏବଂ ଗୋଟାଏ କାଠ ବାକ୍ସରେ ରହୁଥିଲା ଅନେକ ପ୍ରକାର ଚେରମୂଳ, ଔଷଧମୌଚ୍ଛୁଧି, ଗୋରଚନା, ରସସିନ୍ଦୁର, କସ୍ତୁରୀ, ବାଘଦାଂତ, କଂଖାରପିଣ୍ଡି, ବଜ୍ରକାପ୍ତା ହାଡ଼, ଗସ୍ତଳ ଶିଂଘ ଇତ୍ୟାଦି ଇତ୍ୟାଦି । ପୁଣି ଥିଲା ନାନା ପ୍ରକାର ହାତତିଆରି ବଟିକା, ଚୂର୍ଣ୍ଣ, ଲେହ୍ୟ, ଲୁହା,ପ୍ରବାଳ ଓ ମୁକ୍ତା ଭସ୍ମ, ମୋଦକ, ଇତ୍ୟାଦି ।

ପଚିଶ୍ଚାଳିଶ ବର୍ଷରେ ପତ୍ନୀ ବିୟୋଗ ଘଟିଲା ପରେ ତାଂକ ପୂଜା ଧୂନାର ମାତ୍ରାଟା ଆହୁରି ବଢ଼ି ଯାଇଥିଲା । ସେ ବଡ଼ ଝିଅ ରମାକୁ ବାହା ଦେଇ ଏକମାତ୍ର ପୁଅ ସନାତନକୁ ମଣିଷ କରିବାରେ ଲାଗିଲେ । ସେଇ ଥିଲା ତାଂକର ମନମୁନ-ଚଇତନ, ଏକାଇଗ୍ ବଲା ବଣିକେଶନ । ତାଂକୁ ଗାଆଁ ସ୍କୁଲରୁ ନେଇ ପାଖ ଗାଆଁ ହାଇସ୍କୁଲ୍‌ରେ ପଢ଼ାଇଲେ । ତା'ପରେ ଆହୁ ଟିକଏ ଦୂରକୁ ପଠାଇ କଲେଜରେ ପି. ୟୁ. * ପାସ୍ କରାଇଲେ । ତାର ବ୍ରତ-ଦାଣକର୍ମ ଏବଂ ଶେଷରେ ବାହା ଇତ୍ୟାଦିରେ ଶହ ଶହ ଟଙ୍କା ଖରଚ କଲେ । ସନାତନର ସ୍ତ୍ରୀ ଘରଯୋଗ୍ୟା ହେବା ପରେ ପୁଆଣି କରାଇ, ତାକୁ ଘରକୁ ଆଣି ସବୁ ଦାୟିତ୍ୱ ସମ୍ପି ଦେଲେ । ନନା ହିଁ ଥିଲେ ପିଲାଦିନୁ ସନାତନର ପିତୃ-ପ୍ରତିମା, ତାର ସମଗ୍ର ବିଶ୍ୱସାର ।

ଉପରଓଳିଟା ତାଂକର କଟି ଯାଉଥିଲା ପୁରାଣପାଠରେ । ତାଂକ ଝିଅ ରମା ଓ ପୁଅ ସନାତନ ପିଲା ଥିଲାବେଳେ ସେ ସେମାନଂକୁ ପାଖରେ ବସାଇ ବେଳ ପୁରାଣକଥା ଶୁଣାଉଥିଲେ; ଭଲ ମଣିଷ ହେବାକୁ ନାନା ଉପଦେଶ ଦେଉଥିଲେ । ରାମ, ଲକ୍ଷ୍ମଣ, ହନୁମାନ, ବିଭୀଷଣ ଏବଂ ସୀତା-ସାବିତ୍ରୀଂକ ମହାନୀୟ ଚରିତ୍ରମାନ ସେମାନଂକୁ ବୁଝଉ-ଥିଲେ । ପୁଅ କଲେଜରେ ପଢ଼ିବା ପରେ ଛୁଟିରେ ଗାଆଁକୁ ଆସିଲେ ସେ ବଡ଼ପାଟିରେ ଖଂଜାପିଂଡାରେ ବସି ପୁରାଣ ପଢ଼ୁଥିଲେ, ଗୀତାର ଶ୍ଳୋକମାନ ବ୍ୟାଖ୍ୟା କରୁଥିଲେ— ଯେମିତି କି ସେ ସବୁ ଘର ଭିତରେ ଖଟରେ ଶୋଇ ଉପନ୍ୟାସ କି କ'ଣ ଗୋଟାଏ ପତ୍ରିକା ପଢ଼ୁଥିବା ସନାତନ କାନରେ ଯାଇ ପଡ଼ିବ, ଯାହା ଫଳରେ କି ଧର୍ମପଥରୁ ତା' ଗୋଡ଼ ଖସିବ ନାହିଁ ।

---

* ପି. ୟୁ = ପ୍ରି. ୟୁନିଭର୍ସିଟି । ଏହା କିଛି ବର୍ଷ ତଳେ ଚାଲୁଥିଲା ।

କିଂନ୍ତୁ, ହଠାତ୍ ହନେ କ'ଣ ହେଲ ନେକାଣି, ବିଶ୍ୱଂଭର ନଂଦେ ସକାଳୁ ଯେ ବିଲକୁ ଯାଇଥିଲେ ଆଉ ଘରକୁ ଫେରିଲେ ନାହିଁ । ରାତି ହୋଇଗଲା ଯାଏ ବୋହୂ, ରଂଧାବଢ଼ା ସାରି ସ୍ୱାମୀ ଓ ଶଶୁରଂକ ବାଟ ଚାହିଁ ବସିରହିଲା । ତା'ପରେ ଯାଇ ମୁହଁସଂଜ-ବେଳକୁ ସନାତନ ଫେରିଆସିଲା । ମୁହଁ ଗଂଭୀର, ଶୁଖି କଲାକାଠ ପଡ଼ିଯାଇଛି । ଖାଇବ ନାହିଁ ବୋଲି ମନା କରିଦେଲା । ନନା କାହିଁଗଲେ ବୋଲି ପଚାରିବାରୁ କହିଲା— କେଜାଣି କୁଆଡ଼େ ଯାଇଥିବେ ।

ରାତି ପହରେ ହେବା ବେଳକୁ ତାଂକ ଗାଁଭାଇ ଟେକା ଭମରା ଆସି ଖବର ଦେଲା— ସାଆଁତେ ଜକେଇ ଚାଲିଗଲେ, ସଂଗାତଂକ ପାଠିକି । ସଂଗାତେ ଖବର ପଠାଇଥିଲେ, ତାଂକ ଦହ ଭାରି ଖରାପ ! ତାକୁ ଗାଁ ମୁଂତେ ଦେଖି କହିଲେ—ଘରେ ଖବର ଦେଇଦେବୁ । ମୁଁ ସଂକ୍ରାଂତି ପରେ ଯାଇ ଫେରିବି । ପୁଅ ବୋହୂଂକୁ କହିଦେବୁ, ତାଂକ କଥା ସିଏ ବୁଝିବେ, ମୋତେ ଡକେଇବେ ନାହିଁ ।

କିଂନ୍ତୁ ବିଶ୍ୱଂଭର ପଂଡିତେ ଆଉ ଫେରିଲେ ନାହିଁ । ଧନୁ ସଂକ୍ରାଂତି ଯାଇ ମକର ସଂକ୍ରାଂତି ହେଲା । ତା,ପରେ ପଣା ସଂକ୍ରାଂତି । କିଂନ୍ତୁ ନଂଦେ ନିଖୋଜ । କେଉଁଠି ଅଛଂତି ମଧ୍ୟ କେହି କିଛି ଠିକ କରିପାରିଲେ ନାହିଁ । କିଛିଦିନ ସଂନ୍ଧାନ ପରେ, କିଛି ଦିନ ଝିଅ-ଜ୍ୱାଇଁ ଘରେ କଟାଇ ତା'ପରେ ପୁରୁଷୋତ୍ତମରେ କିଛି ମାସ କଟାଇଲେ । ଶେଷରେ ଶୁଣାଗଲା ଯେ ଏ ଗାଆଁ ସେ ଗାଆଁ ବୁଲୁଛଂତି, ତାଂକ ମୁଂଡ କୁଆଡ଼େ ଖରାପ ହୋଇଗଲାଣି । ମଇଳା କୋଉଟ ଚିରା ଲୁଗା ଖଂଡେ ପିଂଧି ଅଖିଆ ଅପିଆରେ ଏଣେ ତେଣେ ବୁଲୁଛଂତି । ସନାତନ ପ୍ରଥମେ ବାପା କଥା ପଡ଼ିଲେ କରଛଡ଼ା ଦେଉଥିଲା । କହୁଥିଲା—ତାଂକ କଥା ସିଏ ଜାଣଂତି, ମୁଁ କ'ଣ ଗୋଟାଏ ତାଂକୁ ବୁଝାଇବି ? କିଂନ୍ତୁ ପରେ ସମସ୍ତଂକ ତାଗିଦାରେ ବହୁଆଡ଼େ ଖୋଜା ଖୋଜି କରି ମାମୁ ହେଉରିକାଂକୁ ସାଂଗରେ ନେଇ, ବୁଝାଇ ଶୁଝାଇ ଘରକୁ ଆଣିଥିଲା ।

ଏବର ବିଶ୍ୱଂଭର ପଂଡିତେ ସଂପୂର୍ଣ୍ଣ ଅଲଗା ମଣିଷ, ତାଂକ ହାବଭାବ ଓ ମନୋଗତିରେ ବିଶେଷ କିଛି ଅସ୍ୱାଭାବିକତା ନଥିଲେ ମଧ୍ୟ ସେ ବେଳେବେଳେ ମୃତ୍ୟୁ ବିଷୟ ଭାବି ଅସ୍ଥିର ହୋଇଉଠଂତି, ନିଜ ମୃତ୍ୟୁ ବିଷୟ ସମସ୍ତଂକ ଆଗେ ବର୍ଣ୍ଣନା କରଂତି, ମୃତ୍ୟୁ ସୂଚନା ପ୍ରାୟ ଗୁଡ଼ିଦେଇ ପାରିଲେଣି । ତେବେ ଗାଧୋଇବା ଖାଇବା କିଛି ସମୟ ଯେ ଠାକୁରଂକ ପାଖେ ନ ବସଂତି ତା ନୁହେଁ । କେବଳ ବୋହୂ କୁହାବୋଲା କଲେ ଯାହା ତା କଥା ଶୁଣଂତି । ସନାତନ ସଂଗେ ତାଂକର ପ୍ରାୟ କଥାବାର୍ତ୍ତା ହୁଏ ନାହିଁ । ତାକୁ ଦେଖିଲେ ବରଂ ବସିବା ଜାଗାରୁ ଉଠିପଡ଼ି ଅନ୍ୟତ୍ର ଚାଲିଯାଂତି । ବହୁତ ଡକାଡକି କଲେ ନିତ୍ୟ କର୍ମ ସାରି କଣ ଗଂଡେ ଖାଇଦେଇ ଯେଇ ଦାଂଡପିଂଡାରେ ହିଁ ବସିରହଂତି ।

ସେଦିନ ଚଡ଼କ ପୂଜା, ଗାଆଁରେ ଝାମୁଯାତ୍ରା । ସମସ୍ତେ ଯାଇ ଗାଆଁ ମୁଂଡେ ଜମା ହୋଇଛଂତି । ବାଜା, ବଡ଼କାଠ, ଶଂଖମହୁରୀରେ ଗାଆଁ ମୁଂଡ ଉଚ୍ଛୁଳି ଉଠୁଛି । ଶୂନ୍‌ଶାନ୍ ଗାଁ ଦାଂଡକୁ ଗୃହିଁ ବିଶ୍ୱଂଭର ପଂଡିତେ ବସି ରହିଛଂତି ନିଜ ଘରପିଂଡାରେ ।

ସାମ୍ନା ଟାଂଗଣାରେ ଉଇ ହୁଂକାରେ ପିମ୍ପୁଡ଼ି ଧାଡ଼ି ଲାଗିଛଂତି । ସୁନାରି ଗଛରୁ ହଳଦିଆ ଫୁଲ୍ ଝଡ଼ି ସାରାଆଡ଼ ଗ୍ରୁଡଦେଇଛି ।

ହଠାତ୍ ପାଟିତୁଂଡ ଶୁଣାଗଲା । ନଂଦେ ଦେଖିଲେ ପଂଚାଏ ଲୋକ ଜଣେ କାହାକୁ ଟେକି ଧରି ସିଆଡ଼କୁ ଆସୁଛଂତି । ସେମାନେ ଆସି ନଂଦଂଙ୍କ ପିଂଡାରେ ସନ ଡାକୁ ଚିତ୍ କରି ଶୁଆଇଦେଲେ । ବଡ଼ରାସ୍ତାରେ ସାଇକେଲରେ ଆସୁଥିବାବେଳେ ବାଣକ୍ ବିଭରର ଜପ୍ ଧକ୍‌କାରେ ସେ ମାଡ଼ିପଡ଼ିଛି । ଦିହଯାକ ରକ୍ତ ସାଲୁବାଲୁ; ମୁଂଡ ଫାଟି ଛିନ୍ନ ହୋଇ ଯାଇଛି । ହରି ପଂଡା କହିଲେ :—ଭାଇନା,ସନା ଗୃଲିଗଲା । ବିଶୁ ନଂଦେ ବଡ଼ବଡ଼ ହୋଇ କଣ କହିଲେ; ଏତେବଡ଼ ଭେଂଡାଆଟାଏ ଏଇନା ଥିଲା,କୁଆଡ଼େ ଗୃଲିଗଲା, କେହି କିଛି କରି ପାରିଲେ ନାହିଁ । ତା'ପରେ ହିଃ – ହିଃ ହସ ଯେଉଁ ହସ ନିଜ ମୃତ୍ୟୁ ବିଷୟ ଦର୍ଶନ। କରିପାରି ହସଂତି । ସେ ହସ ଯେଉଁପରି କରୁଣ, ସେଇପରି ଭୟଂକର । ମନେହେବ ତାହା ହସ ନୁହେଁ; ସେ ଯେପରି ଖତେଇ ହେଉଛଂତି ମୃତ୍ୟୁକୁ, ମଣିଷର ଅଦୃଷ୍ଟକୁ, ମଣିଷର ଅସହାୟତାକୁ ଏବଂ ନିଜକୁ ।

ସନାତନର ଜଳଂତା ଜୁଇ ପାଖରେ ସେ ଯାଇ ନିଶ୍ଚଳ ପ୍ରତିମା ପରି ଛିଡ଼ା ହୋଇଛଂତି । ନିସ୍ତବ୍ଧ, ଉଦାସୀନ, କରୁଣ, ଦ୍ୱଂଦ୍ୱମୟ ସେ ଗୃହାଣି । ତାଂକୁ ଦେଖି ମନେ ହେଉଛି ଯେମିତି ପୋକଖିଆ ଖୁଂଟଟାଏ, ଠେଲି ଦେଲେ ଏଇନେ ଭାଂଗି ପଡ଼ିବ । କିଏ ଜଣେ କହିଲା— ସେ କାଂଦିବା ଦରକାର । ନୋହିଲେ ଆହୁରି ପାଗଳ ହୋଇଯିବେ, ତାଂକୁ କଂଦାଅ । ନରି ମିଶ୍ରେ ଆସି ତାଂକୁ ହଲାଇ ଦେଲେ, କାଂଦ କାଂଦ ହୋଇ କହିଲେ : ବିଶୁ ଭାଇନା, ସନା ଗୃଲିଗଲା । ନଂଦେ କାଂଦିଲେ ନାହିଁ । ତାଂକ ଆଖିରେ ମନେହେଲା ଦୃଷ୍ଟି ନାହିଁ । ସେ ଯେପରି ଏକ ଦାରୁଭୂତ ମୂର୍ତ୍ତି । କିଛି ସମୟ ପରେ କହିଲେ—ଗ୍ଲାଲଗଲା, ଯାଉ । ମୁଁ ଯେତେ ଡାକିଲି ସେ କ'ଣ ଶୁଣିଲା ? ଯାଉ ଯାଉ ଯୁଆଡ଼େ ତା' ମନ ହେଉଛି ଯାଉ ।'

ସେ ସ୍ଥିର ଅପଲକ ଦୃଷ୍ଟିରେ ଦେଖୁଛଂତି ସନାତନ ଜଳିଯାଉଛି । ସବୁ ପାଉଁଶ ହୋଇଯିବା ପରେ ସେ କହିଲେ—ଗଲା, ସବୁ ଜଳିଗଲା, ଆଉ କ'ଣ ଆସିବ ? ମନେ ହେଲା, ଗୋଟାଏ ଭୟାବହ ଦୁଃଖର ମୁହାଁ ମୁହିଁ ଛିଡ଼ା ହୋଇ ସେ ଯେପରି ତାର ଅଟକାଇ କରୁଛଂତି, ତାକୁ ମନର ବନ୍ଦ ଦରଜା ଭିତରେ ପ୍ରବେଶ କରିବାକୁ ଦେଉ ନାହାଂତି; କିଂତୁ ଗୋଟାଏ କଳା ଭାଲୁ ପରି ସେ ତାଂକ ଆଡ଼କୁ ମାଡ଼ି ଆସୁଛି, ନଖରେ ସାମ୍ନା ଭୂଇଁ ବିଦାରଣ କରି ଦେଉଛି । ସେ ସେଇପରି ଏକୁଟିଆ ଘରକୁ ଫେରି ଆସିଲେ । ବୋହୂକୁ ଡାକି କହିଲେ—ଦେ ମା, ତାର ଯାହା କିଛି ଅଛି ସବୁ ବାଡ଼େଇ ଭାଗିଂ ଦେ । ସେ ଆଉ ଆସିବ ନାହିଁ ।

ତା'ପରେ କେତେ ଦିନ ନଂଦଂକର ଆଉ କ'ଣ ହେଲା କାହାର ଆଉ ନଜର ନାହିଁ । ସମସ୍ତେ ଅଂତ୍ୟେଷ୍ଟିକ୍ରିୟା, ଘରଚିତୁଳା, ଦଶାହ କାର୍ଯ ଏବଂ ବ୍ରାହ୍ମଣ ଭୋଜନ ଇତ୍ୟାଦିରେ ବ୍ୟସ୍ତ ଥିଲେ ।

କ୍ରମେ ଦେଖାଗଲା, ସେ ନଜର ମୃତ୍ୟୁକଥା ଆଉ ପ୍ରାୟ କହୁନାହାଂନ୍ତି । ଧୀରେ ଧୀରେ ସମସ୍ତ ଭୁଲିଗଲେଣି; ବରଂ ଯେ ଯେ ଅତିମାତ୍ରାରେ ଜୀବଂତ ତାହାହିଁ ସାବ୍ୟସ୍ତ କରୁଛଂନ୍ତି । ସବୁବେଳେ କହୁଛଂନ୍ତି, ଏତେବଡ଼ ଭେଂଡ଼ିଆଟା ଚାଲିଗଲା । ମୁଁ ଏତେ ଡାକିଲି, କଣ ଶୁଣିଲା । ମୁଁ ହେଲେ ମଣଷ ଇଥାଂନ୍ତି ସେ ଥାଆଂନ୍ତା । ତା'ପରେ ଅସହ୍ୟ ଭେ – ଭେ କାଂଦ, ଘର ଉଚ୍ଛୁଳି ପଡ଼ୁଚି – ଠିକ୍ ଯେପରି ସେ ସୁସ୍ଥ ସ୍ୱାଭାବିକ ଥିଲାବେଳେ ମଂତ୍ରଧ୍ୱନିରେ ଘର ଉଚ୍ଛୁଳି ଉଠୁଥିଲା ।

ସେ ଟିକିଏ ସୁସ୍ଥ ସ୍ୱାଭାବିକ ହେଲାମାତ୍ରେ ଯେଉଁ କଳା ଘାଂଟା ହାତୁଡ଼ିରେ ପଡ଼ିଛଂନ୍ତି । ଯେ ଖାଲି ଦରଜା ଖୋଂଗି ଭିତରେ ଚକ୍କି ନାହିଁ, ତାର ଦାଢ଼ୁଆ ଜଂଭରେ ତାଂକର ସର୍ବାଂଗ ଗୁଡ଼ିଗଲାଚ୍ଛ, ତା କବଳରୁ ଉଦ୍ଧାର ନାହିଁ, ସେ ବିଛଣାରେ ପଡ଼ିରହିଛଂନ୍ତି । ସବୁବେଳେ ମୁହଁରେ ଲଗି ରହିଚି –"ସନାତନ, ସନାତନ, ସନା ଚାଲିଗଲୁ ବାପ ।"

ଯେଦିନ ସେ ଉଠିପନ୍ଥା ଦାଂଡ଼କୁ ପାଦ ବଢ଼ାଇଲେ । ସାମ୍ନା ଟାଂଗଣାରେ ଉଛନ୍ନଂକରେ ପିମ୍ପୁଡ଼ିଂକ ଧାଡ଼ି ଲାଗିଛି । ପୁନାଗ ଗଛରୁ ହଳଦିଆ ପଣ ଝଡ଼ିପଡ଼ି ଚଂଦା ଭୁଇଁଟାକୁ ଢାଂକି ଦେଇଛି । ପାଖ ନ ଗଅଇଶ ବୁଦାରେ ଗୋଟାଏ ପୋହଲା ଏଂଡୁଅ ଅଳ୍ପ ଦୂରରେ ବସିଥିବା କଂକିଟାକୁ ଧରିବାକୁ ଯାଉଚି ।

ଯେ ସମ୍ଭାଳି ପାରିଲେ ନାହିଁ । ଲଥିକିନା ତଳେ ପଡ଼ିଗଲେ ।

ତାଂକୁ ଟେକାଟେକି କରି ଲୋକେ ନେଇ ଦାଂଡ଼ପିଂଡ଼ାରେ ଶୁଆଇଦେଲେ । ତା'ପରେ ବଇଦ ଆସି ନାଡ଼ି ନାହିଁ ବୋଲି କହିବା ପରେ ତାଂକୁ ସେଠାରୁ ନିଆଗଲା ଖଂକାଅଗଣା ତୁଳସୀ ଚଉରାମୂଳକୁ । ବୋହୂ ଆସି ଗଂଗାଜଳ, ନିର୍ମାଳ ଦେଲା, ସକ ସକ ହୋଇ କାଂଦିଲା । ସବୁ ଶୁନ୍‌ଶାନ୍, ନିଶୂନ୍ । ଏତେ ଲୋକ ଘେରି ବସିଛଂନ୍ତି ତାଂକ ଶବପଟେ କାହାରି ତୁଂଡରେ କଥା ପଇଟୁ ନାଇ । ସବୁ ନିଶୂନ୍ ।

ସେଇ ଉଦୁଉଦିଆ ଖରାଦିନିଆ ଦ'ପହରରେ ଯେତି ବାଉଳି ଖାଇ ପହଂଚିଲା ଜଣେ ସ୍ତ୍ରୀଲୋକ—ଜାନି—ଜାନକୀ--ନଂଦଘରର ବହୁଦିନର ମୂଳିଆଣୀ । 'ସାର୍ଥା ତେ ଚାଲିଗଲେ' ବୋଲି ବାହୁନା ଛାଡ଼ି ସେ ତାଂକ ଗୋଡ଼ ଦିଟାକୁ ଧରିବାକୁ ଗଲା । ମାତ୍ର 'ହାଁ ହାଁ, ଛୁଅଁନା ଛୁଅଁନା' ବୋଲି ସବୁ ମାଲିଭାଇ ପାଟି କରି ଉଠିବାରୁ ସେ ଦୂରେଇ ଯାଇଁ ବସିଲା । ସେ ଭୁଲି ଯାଇଥିଲା ଯେ ସେ ଜାତିରେ ଅଛୁଆଁ, ନଂଦଂକର ପାଦ ଛୁଇଁବାର ଅଧିକାର ତାର ନାହିଁ ।

କିଛି ସମୟ ବସି ସେ ସେଠାରୁ ଧୀରେ ଧୀରେ ଚାଲିଗଲା । ତା ସାଙ୍ଗରେ ଆସିଥିଲା ତାର ପିଲାଦିନର ସାଙ୍ଗ ସେବତୀ । ଦୁହେଁ ସେଠୁ ସିଧା ମଶାଣିଭୂଇଁକୁ ଗଲେ—ଯେଉଁଠି ସେ ସାଆଁନ୍ତଙ୍କ ଶେଷକୃତ୍ୟ ଦେଖି ପାରିବେ ।

ଧୂ ଧୂ ଖରା । ନଗୁଡିଆ ମଶାଣି ପଦାରେ ଜାମି ଅପେକ୍ଷା କରି ରହିଚି କେତେବେଳେ ବଣ୍ଟିଂଭର ନଂଦଂଙ୍କ ଶବ ସେଠି ପହଂଚିବ ।

କିଛି ସମୟ ପରେ ଦାଂଡରେ "ରାମ ନାମ ସତ୍ୟ ହୈ" ଶୁଣାଗଲା । ଜାମି କହିଲା ହେଇ, ଅସୁଛଂତି । ଶୋଭାଯାତ୍ରାର ଶବ୍ଦ କ୍ରମେ କ୍ରମେ ନିକଟରୁ ନିକଟତର ହୋଇଆସିଲା ।

ତା'ପରେ ସେ ସେବତୀକୁ କହିଲା—ଚାଲ୍‌ଯିବା ।

ସେବତୀ କହିଲା—ଆସିଲୁ କାହିଁକି ? କହୁଥିଲୁ ପରା ଶେଷ ଦେଖା ଦେଖିବୁ ?

ଜାମି କହିଲା—ନ , ଚାଲ୍ ।

କିଛି ଦୂର ଗଲାପରେ ଜାମି କହିଲା, ଏଇ ଗଛମୂଳେ ଟିକିଏ ବସିବା । ବଡ଼ ହାଲିଆ ଲାଗୁଚି । ସେତେବେଳକୁ ଦୂରରେ ମଶାଣିପଦାରେ ମୋଡ଼ି ମୋଡ଼ି ହୋଇ ଧୂଆଁ ଉପରକୁ ଉଠୁଚି । ବୋଧହୁଏ ମୁଖାଗ୍ନି ପରେ ଚିତାରେ ଅଗ୍ନି ସଂଯୋଗ କରାଯାଉଚି ।

ଜାମି କହିଲା—ତତେ କହିବି କହିବି ବୋଲି ଭାବିଲି ଅନେକ ଦିନରୁ ଗୋଟେ କଥା କହି ପାରିନି । ଆଜି ତତେ କହିବି ମୋ କଥା, ଯାହା ଏତେ ଦିନ ନିଆଁ ପରି ଜୁଳୁଥିଲା ମୋ ଛାତି ଭିତରେ....। ସାଆଁନ୍ତଙ୍କ ଲଗୁ କିଆରିକି ଲାଗି ଯେଉଁ ସେଇ ପାତିଗଛଟା ତୋଟା, ଠିକ୍ ସେଇଠି—

ସେବତୀ କହିଲା—ହଁ, ସାଆଁନ୍ତେ ତ ସେଇ କଟା ମୁଂଡ ଖରାପ ହେଲାଦିନୁ ବରାବର କହୁଛଂତି । ସେଇଠି କିଏ ଗୋଟାଏ ତାଂକୁ ମାଡ଼ିବସିଲା !

ଜାମି କହିଲା—ଦିନେ ମଗୁଣିର ମାସରେ ଧାନ ଅମଳ ହେବା ଆଗରୁ,.... ନଗୁଡିଆ ଦି'ପହର । ପବନଟା ହମାଲ ହୋଇ ବୋହୁଥାଏ । ବିଲରେ ଥାଏ ଏକୁଟିଆ ମୁଁ, ସାଆଁନ୍ତେ ଆସି ପହଂଚିଲେ । କହିଲେ, ଏଠି କ'ଣ କରୁଚୁ ଜାମି—ମୋ ସାଙ୍ଗେ ଆ, ତୋଟାକୁ ଯିବା ।

ଦୁହେଁ ଯାଇ ନାଳ ବଂଧ ପାଖରେ ପହଂଚିଲୁ । ହଠାତ୍ ସାଆଁନ୍ତେ ମୋତେ ଭିଡ଼ିନେଲେ ସେ କଟା ତଳକୁ । ମୋ ଦିହରେ ପଡ଼ିଲା ପିଣିପିଟୁଆଁ—ଦିହ ଶୀତେଇ ଉଠୁଥାଏ ।

କେତେ ସମୟ ଚାଲିଗଲା ମୋର ଖିଆଲ ନାହିଁ । ଦୁହେଁ ହଜିଯାଇଥାଉଁ ଦୁହିଁଙ୍କ ଭିତରେ । ସାଆଁନ୍ତଙ୍କ ଗରମ ନିଶ୍ୱାସ ମୋ ଦିହରେ ଶିର୍ ଶିର୍ ହୋଇ ଗଳିଯାଉଥାଏ । ତା'ପରେ ଖସ୍ ଖସ୍ ଶବ୍ଦ ଶୁଣାଗଲା । ସେ ଶବ୍ଦ ଧୀରେ ନିକଟେଇ ଆସିଲା । ତା'ପରେ କିଏ

ବଡ଼ ପାଟିରେ ଡାକିଲି—'ନନା' । ଦୁହେଁଯାକ ଉଠିପଡ଼ି ଦେଖିଲୁ ସନାବାବୁ ସେଠି ଠିଆ ହୋଇଛଂତି । ଗାଈ ଖୋଜିବାକୁ ଆସିଥିଲେ । ସାଆଁତେ ତରବରରେ ଭକ୍ତି ଲୁଗାଟା ଘୋଟାଇ ନେଇ ପିଂଧି ପକାଇଲେ । ମୁଁ ତ ସେଇଠି ଲାଜରେ ଭୂଇଁରେ ପଶିଗଲି ।

ତା'ପରେ ସନାବାବୁ ପଛ ଫେରାଇ ଚାଲିଗଲେ । ସାଆଁତେ ତାଂକ ପଛେ ପଛେ 'ସନା ରନ' ଡାକି ଗୁହାରିଥାଂତି । ହେଲେ, ସନାବାବୁ ଥରେ ହେଲେ ଆଉ ପଛକୁ ଅନାଇ ନାହାଂତି । ଏମିତି ବାପ ପୁଅ ଦୁହେଁ ଗାଁ ମୁଂଡଯାଏ ଗଲେ । ତା'ପରେ ସାଆଁତେ ମୁହଁ ଫେରାଇଲେ; ଅନ୍ୟ ଆଡ଼କୁ ମୁହାଁଇଲେ । କୁଆଡ଼େ ଯେ ଗଲେ ଅନେକ ଦିନଯାଏ କେହି କିଛି ଖୋଜଖବର ପାଇଲେ ନାହିଁ···

ଜାନିର କଥା ଶେଷ ହେଲା ବେଳକୁ ବଣ୍ଟଂଭର ନଂଦେ ପାଉଁଶ ହୋଇସାରିଥିଲେ । ତାଂକ ମର-ଶରୀର, ଲଂଗ-ଦେହ ସବୁ କିଛି ପଂଚଭୂତରେ ମିଶି ଯାଇଥିଲା । □□□

'ଗଳ୍ପ' - ପୂଜା ବିଶେଷାଂକ, ୧୯୭୩

## ସୂର୍ଯ୍ୟଙ୍କ ସପ୍ତାଶ୍ୱ

ପଶୁଡାକ୍ତର ସଂଗ୍ରନନ ଦାସ ଡାକ୍ତରଖାନାରୁ ଫେରି ବାରଣ୍ଡାରେ ଆରାମଚେୟାରରେ ବସି ଟିକିଏ ଥକା ମାରୁଛନ୍ତି । ଦିନଯାକ କଠିନ ପରିଶ୍ରମ କରି ଦ୍ୱିପ୍ରହର ଗଡ଼ିଯିବା ପରେ ସେ ଏଇମାତ୍ର କ୍ୱାର୍ଟରକୁ ଫେରିଛନ୍ତି । ଆରାମଚେୟାରରେ ବସି ସକାଳେ ଆସିଥିବା ଖବରକାଗଜ ଉପରେ ତରବରରେ ଆଖି ବୁଲାଇ ନେଉ ନେଉ ଗତକାଲି ଗ୍ରାଣ୍ଡ୍ ଟ୍ରଙ୍କ୍ ରୋଡ଼୍‌ରେ ଘଟିଥିବା କେଉଁଟା ମୋଟର ଦୁର୍ଘଟଣା ସଂକ୍ରାନ୍ତ ସମ୍ବାଦ ଓ ଛବି ଉପରେ ତାଙ୍କର ନଜର ପଡ଼ିଲା । ଟ୍ରକ୍ ଚାପା ପଡ଼ିଥିବା ବଳଦ ଦୁ'ଟାଙ୍କ ଚିତ୍ରକୁ ସେ ଟିକିଏ ଭଲକରି ନିରେଖି ଦେଖିଲେ, ତା'ପରେ ନିହତ ଶଗଡ଼ିଆ ଏବଂ ଅନ୍ୟ ଏକ ଜାଗାରେ ଟ୍ୟାକ୍ସି ଦୁର୍ଘଟଣାରେ ଆହତ ଓ ମୃତ ଲୋକମାନଙ୍କ ଛବି ଗୁଡ଼ାକଉପରେ ଟିକିଏ ଆଖି ବୁଲାଇଦେଲେ । ପୃଷ୍ଠାଟି ଓଲଟା- ବାକୁ ଯାଉଥିଲେ । ଠିକ୍ ଏତିକିବେଳେ ଜଣେ ଲମ୍ବା ଆଉ ତମ୍ବଲିଆ ଲୋକ ଆସି ପହଞ୍ଚିଲା । ହାତରେ ଖଣ୍ଡିଏ ଛୋଟ ବହି—ବୋଧହୁଏ ଭଗବଦ୍ ଗୀତାର ବଙ୍ଗୀୟ ପକେଟ ସଂସ୍କରଣ ଗ୍ରେଟ ବହିଟି ଭିତରେ ଗୁଞ୍ଜା ହୋଇଥିଲା ଖଣ୍ଡିଏ ଦୁ'ଟଙ୍କିଆ ନୋଟ ଏବଂ ଦୁଇତିନି ଖଣ୍ଡ ଟଙ୍କାକିଆ ନୋଟ୍—ଯାହା ବହିଟାଙ୍କରୁ ନିଜ ନିଜ ରଙ୍ଗ ଯୋଗୁଁ ବେଶ୍ ବାରି ହୋଇ ପଡ଼ୁଥିଲେ । ତା ସାଙ୍ଗକୁ ଭଙ୍ଗା ହୋଇ ରହିଥିଲା କେତେଖଣ୍ଡ କାଗଜ । ଲୋକଟି ଡେଙ୍ଗା, ପାତଳା । ତା ହାଡ଼ୁଆ ଗାଲରେ ଆଖିଦିଟା କେ ଗଡ଼କୁ ପଶିଯାଇଛି । ପିନ୍ଧିଛି ଖଣ୍ଡେ ଅଧାମଇଳା ସାର୍ଟ ଏବଂ କାନ୍ଧ ଉପରେ ଖଣ୍ଡେ ଗାମୁଛା । ସେ ତାଙ୍କ ହାତକୁ ଖଣ୍ଡେ କାଗଜ ବଢ଼ାଇଦେଇ କହିଲା – "ଆଜ୍ଞା, ସଂଗ୍ରନନ ବାବୁ ଡାକ୍ତରଙ୍କ ବସା ଏଇଟା ?"

ସଂଗ୍ରନନ ବାବୁ କାଗଜ ଖଣ୍ଡିକ ଖୋଲି ଦେଖିଲେ ସେଥିରେ ଟଣା ହୋଇଛି କେତେଗୁଡ଼ାଏ ଗାର । ଲୋକଟି କହିଲା, "ଆଜ୍ଞା, ଆପଣ ଡାକ୍ତର ବାବୁ ?" ତା'ପରେ ସଂଗ୍ରନନ ବାବୁଙ୍କ ଇଙ୍ଗିତରେ ନିଶ୍ଚିନ୍ତ ହୋଇ ଟିକିଏ ହସି କହିଲା, "ଆଜ୍ଞା. ଏଇ ମ୍ୟାପ୍ ଦେଖି ଦେଖି ଆସୁଛି । ଏଇ ମ୍ୟାପ୍ ଖଣ୍ଡିକରେ ଆପଣଙ୍କ ଠିକଣା ବତାଇ ଦେଇଛନ୍ତି ହାଇସ୍କୁଲର ଭୂଗୋଳ ଶିକ୍ଷକ । ହେଇଦେଖନ୍ତୁ ଷ୍ଟେସନ୍ ରୋଡ୍, ଭୁଲପାହୁ ଛକ, ବସ୍ ଷ୍ଟାଣ୍ଡ୍, ଏଇଠି ଆପଣଙ୍କ ଘର । ଆପଣଙ୍କ ସଂଗେ ଦେଖାକରିବାକୁ ଆସିଲି ।"

ସଂଗ୍ରନନ ବାବୁ ପଚାରିଲେ, "କଣ ଗାଈ – ଫଇର କିଛି ହୋଇଛି ? ପେଟଫୁଲା ଫାଟୁଆ !"

ଲୋକଟି କହିଲା, "ଆଜ୍ଞା ନାହିଁ । ସେସବୁ କିଛି ନୁହେଁ, ମୁଁ ଆପଣଙ୍କୁ ଟିକିଏ ବ୍ରହ୍ମବିଦ୍ୟା ଦେଖାଇବି । ବହୁତ ପରିଶ୍ରମ, ଧ୍ୟାନ ଧାରଣା କରି ଏହା ହାସଲ କରିଛି । କଲିକତାର ମେଘନାଦ ସାହା ଷ୍ଟ୍ରୀଟ୍‌ର ଜମିଦାର ଭୋଲାନାଥ ଗାଙ୍ଗୁଲି, ଇଣ୍ଡିଆନ ସାଲ୍ଟ

କୋଂପାନୀର ମେନେଜିଂ ଡ଼ିରେକ୍ଟରର ମଧୁମନ୍ତ୍ର ବିଶ୍ୱାସ, ସର୍ବଜନ ଡାକ୍ତର ଯେଉଁ ସମସ୍ତେ ଏହା ଦେଖି ତାଙ୍କ ବୋଲାଯାଇଛନ୍ତି । ଏ ବିଦ୍ୟା ବ୍ରହ୍ମାଣ୍ଡରେ କେହି ପାଇ ନଥିଲେ । ଶୁକ, ପରୀକ୍ଷିତ, ଜନକ, ଜାବାଲି, ବଶିଷ୍ଠ ବହୁ ସାଧ୍ୟ ସାଧନା କରି ମଧ୍ୟ ଏହା ପାଇପାରି ନଥିଲେ । ପୁଷ୍କର ଗୋସ୍ୱାମୀ ବିଜୟକୃଷ୍ଣଙ୍କ ଶିଷ୍ୟ ମୁଁ । ସେ ବହୁଦିନରୁ ମରଗଲେଣି । ଖବରକାଗଜରୁ କଟା ତାଙ୍କ ଫଟୋଟି ଗୀତାଭିତରୁ କାଢ଼ି ସେ ଦେଖାଇଲା । ତା'ପରେ ମୁଣ୍ଡରେ ଛୁଆଁଇ ପୁଣି ବହି ଭିତରେ ରଖିଦେଲା । କହିଲା, "ମୁଁ ଆଜିଯାଏ ଗୁପ୍ତସ୍ୱପ ଥିଲି । କଲିକତାରୁ ଆସି ଗାଁରେ ରହୁଥିଲି । ଆଳୀ ଶଂଗ୍ରାମ ପାଖରେ ଆମ ଗାଁ । କାଲି ସ୍ୱପ୍ନରେ ଆଦେଶ ହେଲା, ଅଉ ଲୁଗିନା । ଏ ବିଦ୍ୟା ମାତ୍ର ଭାରତରେ, ବିଶ୍ୱରେ ଅପ୍ରାପ୍ୟ । ତୁ ଏହାକୁ ପ୍ରକଟ କର । ଅର୍ତ୍ତ ଲୋକଙ୍କୁ ଦେଖାଇବ ।"

ଫଂଗ୍ଲନନ ବାବୁ କୌତୁହଳୀ ହୋଇ ପଚାରିଲେ, "କ'ଣ ସେ ବିଦ୍ୟା" ? ଲୋକଟି ପକେଟରୁ ଦୁଇଖଣ୍ଡ ସାର୍ଟିଫିକେଟ କାଢ଼ି ବଢ଼ାଇ ଦେଲା । ଖଣ୍ଡିଏ ଟାଇପ କରା ହୋଇଛି, ଅନ୍ୟଟି ହାତଲେଖା । ପ୍ରଥମ ପ୍ରମାଣପତ୍ରଟି ଦେଇଛନ୍ତି ପାଖ କଲେଜର ପଦାର୍ଥ ବିଜ୍ଞାନ ଅଧ୍ୟାପକ ସୁନାକର ମିଶ୍ର । ସେ ଯାହା ଇଂରାଜୀରେ ଲେଖିଛନ୍ତି ତାର ଭାଷାନ୍ତର ଦେଲି – ଆଳୀ କୁସଲ ଗ୍ରାମର ଶ୍ରୀ ଅଚ୍ୟୁତାନନ୍ଦ ପଣ୍ଡା ଜଣେ ସିଦ୍ଧ ସାଧକ - ସେ ସୂର୍ଯ୍ୟଙ୍କୁ ଅପଲକ ଆଖିରେ ବହୁ ସମୟ ଧରି ଅନାଇ ରହିପାରନ୍ତି । ସମଗ୍ର ବିଶ୍ୱକୁ ତାଙ୍କର ସାଧନାତନ୍ତ୍ର ଶୁଣାଇବା ଲାଗି ତାଙ୍କୁ ଆଦେଶ ହୋଇଛି ବୋଲି ସେ ମନେ କରନ୍ତି । ଦ୍ୱିତୀୟ ପ୍ରମାଣପତ୍ରଟି ଦେଇଛନ୍ତି ଜଣେ ଅବସରପ୍ରାପ୍ତ ମୁନସିଫ୍ ।

ଲୋକଟି କହିଲା: ଆଜ୍ଞା, ଏପରି ବହୁ ସାର୍ଟିଫିକେଟ ବହୁ ବଡ଼ ବଡ଼ ଲୋକମାନେ ଦେଇଛନ୍ତି । କାଶିମ ବଜାରର ମହାରାଜା, ବର୍ଦ୍ଧମାନର ଦେବାନ ବାହାଦୁର, ସମସ୍ତେ ମୋତେ ଜାଣନ୍ତି । ତାଙ୍କର ଚିଠି ସବୁ ସୁଟ୍ କେଶ୍‌ରେ ଅଛି । ସୁଟ୍‌କେଶଟା ଛକମୁଣ୍ଡ ଗୁଡ଼ିଆ ଦୋକାନରେ ରଖି ଆସିଛି ।

ତା'ପରେ ହାତ ଯୋଡ଼ି କହିଲା: ଆଜ୍ଞା, ଆପଣ ନଜେ ଟିକିଏ ସାଧନା ଦେଖନ୍ତୁ । ସମଗ୍ର ସୂର୍ଯ୍ୟମଣ୍ଡଳକୁ ମୁଁ ପ୍ରତ୍ୟକ୍ଷ କରିପାରେଁ । ଗୀତାରେ ଭଗବାନ ଯେଉଁ ଦ୍ୱାଦଶ ଆଦିତ୍ୟ, ସୌର ମଣ୍ଡଳ କଥା କହିଛନ୍ତି ସବୁସେଇ ମଣ୍ଡଳ ଭିତରେ ଅଛି । ପ୍ରଣବ, ଓଁକାର, ଆଦିମାତା, ସାବିତ୍ରୀ, ହିରଣ୍ୟଗର୍ଭ, ଗାୟତ୍ରୀ ସମସ୍ତେ ତା ଭିତରେ ଅଛନ୍ତି ।

ଫଂଗ୍ଲନନବାବୁ ଅସ୍ୱସ୍ତି ବୋଧ କରୁଥିଲେ । ସାରାଦିନ ତାଙ୍କ ମନଟା ଆଂବିଳା ହୋଇ ରହିଛି । କଂପାଉଂଡର ଚତୁର୍ଭୁଜଟା ଗୋଟାଏ ଧପ୍‌ପାବାଜ । ସେ ଯାହା କହିବେ ଠିକ୍ ତାର ଓଲଟା କରିବ । ସକାଳୁ କଲ୍‌ରେ ବାହାରିଯିବ, ଫେରିବ ଯାଇ ଡାକ୍ତରଖାନା ଖୋଲିବାର ଅଧଘଂଟା ପରେ । ଗୃହଅଡ଼େ କାହିଁ ବୁଲିବ କିଏ ଜାଣେ ସେ ଡ଼ାକ୍ତର । ବାଉଗୋଛି,

ଛେଳି, ମେଂଢା, କୁକୁରଂକୁ ବଡ଼ ବଡ଼ ହେମାଶରେ ତାଂକୁ ନ ପଚାରି ଇଂଜେକସନ ଦେଇ ଆସୁଛି । କହୁଛି କଣନା ଡାକ୍ତର ବାବୁ କଣ କରିବେ, ମୋଠୁ ବଳେଇଗଲେ ସିନା ! ପୁଣି କହୁଛି ଡାକ୍ତର ବାବୁ ସିନା ଖାଲି ପ୍ରେସକ୍ରିପସନ୍ ଲେଖଂତି ଚିକିତ୍ସା ତ କରେ ମୁଁ । ସେ କଣ ମୋ'ଠୁ ବେଶୀ ଜାଣଂତି ? କିଂତୁ କିଛି ଖରାପ ହେଲେ ସବୁ ଦୋଷ ଲଦିଦେବ ତାଂକ ଉପରେ ତା ଚିକିତ୍ସାରେ ପଶୁପକ୍ଷୀ ମରିଗଲେ ଦୋଷ ଢାଳିଦେବ ଜଂତୁଗ୍ରଣଂକ ଉପରେ ।

ଆଜି ସକାଳେ ଗୋଟାଏ କୁକୁରକୁ ସାଇକେଲ ରିକ୍ସା ମାଡ଼ି ଯାଇଥିଲା । କୁକୁରକୁ ତାର ମାଲିକ ନେଇ ଆସିଥିଲେ । ସେ ସଂଗେ ସଂଗେ ଇଂଜେକ୍ସନ ଦେବାକୁ କଂପାଉଂଡ଼ରକୁ କହିଲେ । ମାତ୍ର ସେ ସେଇ କଂପାଉଂଡ଼ର ବୁଢ଼ୀର ପେଟଫୁଲା ଛେଳିଟା ପଛରେ ଲାଗିଥାଏ । କ'ଣ ନା ଛେଳିଟାକୁ ସେ କୌଣସିମତେ ବଂଚେଇବାକୁ ହେବ, କାରଣ ଆଉ ମାସକ ପରେ ଅଷ୍ଟମୀ ଦିନ ସେ ବଳି ପଡ଼ିବ । ବୁଢ଼ୀର ପୁଣି ଖାସିଟା ପାଇଁ ଯେଉଁ କାଂଦ ! ହତେ ଯେମିତି ତା' ପୁଅର ପେଟ ଫୁଲି ଯାଇଛି ! ଘଂଟାକ ପରେ ଆସି କୁକୁରଟାକୁ ଇଂଜେକସନ ଦେଲା । କୁକୁରଟା ବଂଚିଲା ନାହିଁ । ବଦନାମ ହେଲା ତାଂକର ।

ତା'ପରେ ସେଇ ଗରମ ହୋଇ ଯାଇଥିବା ଗାଈଟା—ହଂବା ହଂବା ରଡ଼ି ଛାଡ଼ୁଥାଏ । ଡାକ୍ତରବାବୁ ନିଜେ ଇଂଜେକସନ୍ ଦେଇ ତା ଭିତରେ ଆଂଗୁଠିରେ ଟେକି ଜର୍ମ ଷଂଢ଼ର ଶୁକ୍ର-ଜୀବାଣୁ ଭର୍ତ୍ତି କରୁଥାଂତି । ତାଂକର ଟେପନ ବର୍ଷର ବୃପତ୍ନୀକ ଜୀବନରେ ସେ ସବୁର ଯେ କିଛି ପ୍ରତିକ୍ରିୟା ହେଉ ନଥିଲା ତା'ନୁହେଁ । କିଂତୁ ସେ କାମଟା ଠିକ୍ଭାବେ କରିଥିଲେ । ତା'ପରେ ସେ ଯେଉଁ କୁକୁଡ଼ାଟା ଆସିଥିଲା, ଖାଲି ଚବିଶ ଘଂଟା ଢୁଳାଉଚି । ଦୁ'ଦିନ ହେଲା କିଛି ଖାଉ ନାହିଁ । ଏଇଭଳି କେତେ କେତେ କେସ୍ ।

ଏଇସବୁ ଜଂଜାଳ ଓ ହଟ୍ଟଗୋଳ ଭିତରେ ଡାକ୍ତର ବାବୁଂକୁ ସୂର୍ଯ୍ୟମଂଡ଼ଳ ଦେଖିବାକୁ ଆଦୌ ଭଲ ଲାଗୁନଥିଲା । ତଥାପି ଲୋକଟା ନଛୋଡ଼ବଂଦା ସେ ଇଆ ଭିତରେ କାଂଜି ଓ ଲୁଗା ଜାଳି ଗାମୁଛା ଫିଧି ଛୁଡ଼ା ହୋଇଥାଏ, ସଇତାକୁ ସାଉଁଳୁଥାଏ । ଡାକ୍ତର ବାବୁଂକୁ ଗିଲାସେ ପାଣି ଆଣିବା ପାଇଁ କହିଲା । ପୂଜାରୀ ଗିଲାସେ ପାଣି ଆଣିଦେଲା । ସେତକ ଢକଢକ କରି ପିଇଦେଇ ଆଉ ଗିଲାସେ ପାଣି ମାଗିଲା । ଦୁଇଗ୍ଲାସ ପାଣି ପିଇସାରି ସେ ଯାଇ ଖରାରେ ଚକାପାରି ବସିଲା । କ'ଣ ସବୁ ମଂତ୍ର ପଢ଼ୁଥାଏ । ସୂର୍ଯ୍ୟଂକୁ ପାଂଚମିନିଟ ଅପଲକ ଦୃଷ୍ଟିରେ ଚାହିଁବା ପରେ କହିଲା—''ହେଇ, ହେଇ ଆଃ ଆଃ ! ହେଁ-ହେଁ । ଆଦିତ୍ୟ ! ସାବିତ୍ରୀ ! ଗାୟତ୍ରୀ ! ହିରଣ୍ୟଗର୍ଭ ! ତତ୍ ସବିତୁ ବରେଣ୍ୟ...'' ଇତ୍ୟାଦି ଇତ୍ୟାଦି ।

ଡାକ୍ତରବାବୁ ବାରଂଡାରୁ ତଳକୁ ଓହ୍ଲାଇ ଯାଇ ସୂର୍ଯ୍ୟଂକ ଆଡ଼କୁ ଚାହିଁଲେ । କିଛିକ୍ଷଣ ଚାହିଁବା ପରେ କହିଲେ, ''କାହିଁ ! ମୁଁ ତ କିଛି ଦେଖି ପାରୁନାହିଁ !''

ସେ ଲୋକଟି କହିଲା—"କିମିତି ଦେଖିବେ ? ମୁଁ କହିଲେ ସିନା ଦେଖିବେ ।" ସେ ଉଠିଆସି ବଡ଼୍ ବଡ଼୍ କରି କଣ ମନ୍ତ୍ର ପଢ଼ି ଡାକ୍ତର ବାବୁଙ୍କ ମୁଣ୍ଡକୁ ଚପିବାକୁ ଲାଗିଲା —ସେଲୁନ୍‌ରେ ବାଳକଟା ସରିଲାପରେ ଭଣ୍ଡାରି ଯେମିତି ଚପେ । ତା'ପରେ କହିଲା, "ଦେଖନ୍ତୁ ।"

ଡାକ୍ତରବାବୁ ଉପରକୁ ମୁହଁ ଟେକି ସୂର୍ଯ୍ୟଙ୍କ ଆଡ଼କୁ ଚାହିଁଲେ । ଦେଖିଲେ କିଛିନାହିଁ । ତା'ପରେ ବିରକ୍ତ ହୋଇ କହିଲେ—"କାହିଁ, କ'ଣ ? ସବୁ ଧପ୍‌ପାବାଜି ।"

ଲୋକଟି କହିଲା, "ଆଜ୍ଞା ! ଗୋଟାଏ ଦିନକରେ କଣ ସୂର୍ଯ୍ୟମଣ୍ଡଳ ଦେଖିବା ସମ୍ଭବ ? ଲାଗେ ଲାଗେ କିଛିଦିନ ଅଭ୍ୟାସ କଲେସିନା ସବୁ ଦେଖିବେ । ତା'ପରେ ସେ ଗାମୁଛା ଗୁଡ଼ାଏ ଲୁଗା ଓ ସାର୍ଟପିନ୍ଧି ଯିବାପାଇଁ ବାହାରିଲା । ଡାକ୍ତରବାବୁ ତାକୁ ଗୋଟିଏ ଟଙ୍କା ଯାଚିଲେ । ସେ ନେଲାନାହିଁ । କହିଲା—"ଛି-ଛି ! ଟଙ୍କା କ'ଣ ହେବ ?"

ଦୁଇ ତିନିଦିନ ପରେ ଡାକ୍ତରବାବୁ ଡାକ୍ତରଖାନାକୁ ଲାଗିକି ଖାଇସାରି ବାରଣ୍ଡାରେ ଟିକିଏ ବସିଛନ୍ତି । ଚାରିଟା ବେଳେ ଦୁଇକୋଶ ଦୂର ନନ୍ଦପୁର ଗାଁକୁ ଏକ କଲ୍‌ରେ ଯିବାକୁ ହେବ । ଆଜି ସକାଳେ ସାମସେର ମିଆଁର କଅଁଳ ଘୋଡ଼ୀଟା ଚିକିତ୍ସା ପାଇଁ ଆସିଥିଲା । ଘୋଡ଼ୀଟା ଖାଲି ଗୋବରରେଇ ପକାଉଛି । ଡାକ୍ତରବାବୁ ଅପେକ୍ଷା କରିବାକୁ କହି ଭିତରେ କାମ କରିବାକୁ ଗଲେ ।

ଘୋଡ଼ୀଟା ଡାକ୍ତରଖାନା ହତାରେ ଚରୁଥାଏ । ସାମସେର ଯାଇଥାଏ ଛକକୁ ବିଡ଼ି କିଣିବାକୁ । କିଛି ସମୟପରେ ଡାକ୍ତରବାବୁ ଘୋଡ଼ୀଟାକୁ ଦେଖିବାକୁ ବାହାରିଲେ ଆସନ୍ତି । ଦେଖିଲେ କେଉଁଠୁ ଗୋଟାଏ ଦୁର୍ଦ୍ଦାନ୍ତ ଘୋଡ଼ା ଆସି ଘୋଡ଼ୀଟାକୁ ଖଣ୍ଡେ ଦୂରଠେଲି ନେଇ ତା ସଙ୍ଗେ ମୈଥୁନ ଆରମ୍ଭକରି ଦେଇଛି । ଡାକ୍ତରବାବୁ ଘୋଡ଼ୀଟାକୁ ଛଡ଼ାଇ ଆଣିବାକୁ ହୁକୁମ ଦେଲେ; କିନ୍ତୁ ତା କିଛି ସହଜକାମ ନୁହେଁ । ସମସ୍ତେ ଖାଲି ଛାଣ୍ଡି ପାଲଟି ଯାଇ ସେ ଦୃଶ୍ୟ ଦେଖୁଥାନ୍ତି । କିଛି ସମୟପରେ ଘୋଡ଼ାଟା ହ୍ରେଷାଧ୍ୱନି କରି ଚାଲିଗଲା ପରେ ଘୋଡ଼ୀଟାକୁ ଆଣି ଇଞ୍ଜେକସନ୍ ଦିଆଗଲା ।

ଡାକ୍ତରବାବୁ ଘର ଭିତରକୁ ଯାଇ ଟିକିଏ ଶୋଇବାକୁ ମନସ୍ଥ କଲେ । ଠିକ୍ ଏତିକିବେଳେ ସେ ଲୋକଟା ଆସି ପହଞ୍ଚିଲା, ଡାକ୍ତରବାବୁ ତାକୁ ଦେଖି ଖେଙ୍କାରି ଉଠିଲେ । ତଥାପି ସେ ନମ୍ରେଇବାନ୍ଦା । କହିଲା—"ସାର୍ ଆଜି ସୂର୍ଯ୍ୟମଣ୍ଡଳ ଦେଖି ପାରିବେ । କମ୍ ସେ କମ୍ ସୂର୍ଯ୍ୟଙ୍କର ସାତଟା ଘୋଡ଼ା ଦେଖି ପାରିବେ ।" ଡାକ୍ତରବାବୁ ରାଗରେ କବାଟ ବନ୍ଦ କରିଦେଇ ଭିତରକୁଯାଇ ଖଟ ଉପରେ ଗଡ଼ି ପଡ଼ିଲେ । ବାହାରେ ଧ୍ୱିପରି

ଗରମ । ଝାଂଜ ପବନ ବୋହୁଚି । ଡାକ୍ତର ବାବୁଙ୍କୁ ନିଦ ଲାଗିଗଲା । କିଛି ସମୟ ପରେ ତାଙ୍କର ମନେହେଲା ସେ ଯେପରି ଘୋଡ଼ାର ହ୍ରେଷା ଶବ୍ଦ ଶୁଣି ପାରୁଛନ୍ତି । ତାଙ୍କର ମନହେଲା ତାଙ୍କ ହତା ଭିତରେ ଯେପରି ଘୋଡ଼ାମାନେ ଦୌଡ଼ାଦୌଡ଼ି କରୁଛନ୍ତି । ସେ ଉଠିପଡ଼ି, ବାହାରକୁ ଯାଇ ଦେଖିଲେ ତାଙ୍କ ପାଇଁ ସତକୁ ସତ ଜଣେଲୋକ ଗୋଟିଏ ଭଡ଼ା ଘୋଡ଼ାଗାଡ଼ି ଧରି ଅପେକ୍ଷା କରୁଛି ଏବଂ ସେଥିରେ ଯୋଗ୍ୟ ହୋଇଛି ସକାଳର ସେଇ ଦୁର୍ଦ୍ଦାନ୍ତ ଘୋଡ଼ାଟା । ଡାକ୍ତର ବାବୁଙ୍କୁ ଦେଖି ଲୋକଟି କହିଲା—"ସାର୍, କଳିପୁର କଲ୍‌ରେ ଯିବେପରା !" * □□□

---

( * ୧୯୭୪ 'ଆସନ୍ତା କାଲି' ପୂଜା ସଂଖ୍ୟାରେ ପ୍ରକାଶିତ )



# ନିଃସଂଗ ପ୍ରତିମା

ବିମଳକୃଷ୍ଣ ବାବୁ କ୍ଳାନ୍ତ ବୋଧ କରୁଛନ୍ତି । ନାଃ, ଆଉ ପାରିହେବ ନାହିଁ । ସେ ଏକୁଟିଆ କ'ଣ କରିବେ ? ସେ କ'ଣ ଏକେଲା ଏ ସୁଅ ମୁହଁକୁ ବନ୍ଦ କରିପାରିବେ ? ସେ ହୁଏତ ଏ ବଢ଼ି ମୁହଁରେ ଏକ ନିଃସଂଗ ପ୍ରତିମା ପରି କୁଆଡ଼େ ଭାସିଯିବେ କିମ୍ବା କେଉଁ ଧାହାଡ଼ ପଥରରେ ବାଡ଼େଇ ହୋଇ ଚୂନ୍‌ଚୂନା ହୋଇଯିବେ—ତାଙ୍କର ଚିହ୍ନବର୍ଣ୍ଣ ରହିବ ନାହିଁ ।

ମଇଳା ପାଣିର ଗୋଟାଏ ପ୍ରଚଣ୍ଡ ସୁଅ ଛୁଟି ଆସୁଛି । ବିଲମାଳ, ଗଛବୃକ୍ଷ, ବଣଜଂଗଲ, ପାହାଡ଼ ଟାଂଗି ସବୁ କିଛି ବୁଡ଼ାଇ ସେ ସ୍ରୋତ ମାଡ଼ି ଆସୁଚି । ସମଗ୍ର ଦେଶଟା ସେଥିରେ ବୁଡ଼ିଗଲାଣି । ଆଉ ନିସ୍ତାରର ବାଟ ନାହିଁ, ରକ୍ଷା ନାହିଁ ।

ଚାରିଆଡ଼େ ଅସ୍ନା', ମଇଳା ପଚା ଦୁର୍ଗନ୍ଧ । କେହି କାହା ମୁହଁକୁ ଅନାଉ ନାହାନ୍ତି । ସମସ୍ତେ ଛୁଟି ଚାଲିଛନ୍ତି ନିଜ ନିଜ ବାଟରେ ବେଦମ ହୋଇ । ପଛକୁ ଅନାଇବାକୁ ତର ନାହିଁ ।

ଏଭଳି ଅସ୍ଥିର ଜଂଜାଳମୟ ଜୀବନ ଆଗେ ତ ନଥିଲା । ତାଙ୍କର ମନେ ପଡ଼େ ତିରିଶ ଚାଳିଶ ବର୍ଷର କଥା । କେଡ଼େ ଶାନ୍ତ, ସରଳ, ସାମଂଜସ୍ୟପୂର୍ଣ୍ଣ ନ ଥିଲା ସେତେ ଜୀବନ ?

ବିଶ୍ୱବିଦ୍ୟାଳୟରୁ ଡିଗ୍ରୀ ହାସଲ କରି ସେ ସରକାରୀ ଚାକିରି ପାଇଥିଲେ । ପିଲାଟି ଦିନରୁ ସେ ଥିଲେ ସରଳ, ସଚ୍ଚୋଟ ଓ ଆତ୍ମସଚେତନ । କିନ୍ତୁ ଚାକିରିରେ ତାଙ୍କର ମନ ମାନିଲା ନାହିଁ । ସେ ସରକାରୀ ପାହ୍ୟାରୁ ଇସ୍ତଫା ଦେଇ ସ୍କୁଲ ମାଷ୍ଟର ହେଲେ ଏବଂ ସେଥିରୁ ପୁଣି ଇସ୍ତଫା ଦେଇ ଦେଶର ଗଣଆନ୍ଦୋଳନରେ ଝାସଦେଲେ । ପ୍ରଥମରୁ ହିଁ, ପାସ୍ତ ଜନା ଚେଷ୍ଟାରେ ସେ ହୋଇ ଉଠିଲେ ତାଙ୍କ ଅଂଚଳର ଲକ୍ଷ ଲକ୍ଷ ବୁଭୁକ୍ଷୁ ଜନତାର ଅବିସଂବାଦୀ ନେତା । ନେତାପଣ ଯେପରି ତାଙ୍କୁ ଅପେକ୍ଷା କରି ବସିଥିଲା । ସେ ଥରକୁ ଥର ଜେଲ ଗଲେ । ମାଡ଼ ଖାଇଲେ । ସର୍ବସ୍ୱ ହରାଇଲେ । ଜମିବାଡ଼ି ବାଜ୍ୟାପ୍ତ ହୋଇଗଲା । କିନ୍ତୁ ସେଥିରେ ହିଁ ତାଙ୍କର ଆନନ୍ଦ, ପରିପୂର୍ଣ୍ଣତା । ସବୁ ହରାଇ ସେ ଯେମିତି ଏମିତି କିଛି ପାଇଲେ ଯାହା ତାଙ୍କୁ ହଜାର ହଜାର ମନୀଷୀଙ୍କ ଭିତରେ ଜଣେ କରିଦେଲା । ଅସୁମାରି ମନୀଷୀଙ୍କ ଭିଡ଼ ଭିତରେ ସେ ଯେପରି ଜଣେ କିଏ ହିତଙ୍କ ବୋଲି ସ୍ପଷ୍ଟ ବାରି ହୋଇଗଲେ । ବହୁ ସଜାଗ ଚାହାଣୀ ସବୁବେଳେ ଯେ ତାଙ୍କରି ଉପରେ ନିବଦ୍ଧ, ଏ ଚେତନାରୁ ସେ ନିଜକୁ ମୁକ୍ତ କରି ପାରିଲେ ନାହିଁ । ସେ ଯେପରି ଏକାକୀ— ବହୁ ଲୋକଙ୍କ ମେଳରେ ସର୍ବଦା ଏକାକୀ । ନିଜର ଏଇ ନିଃସ୍ୱ, ନିଃସଂଗ ଓ କରୁଣ ପ୍ରତିମାକୁ ସେ ଭଲ ପାଇଲେ ।

ନିଜର ନାମ ବାରଂବାର ଉଚ୍ଚାରଣ କରିବାକୁ ତାଙ୍କୁ ଭଲ ଲାଗେ । କଥାବାର୍ତ୍ତାରେ ଆଲାପ ଆଲୋଚନାରେ ସେ ନିଜର ନାମ ବାରଂବାର ଉଚ୍ଚାରଣ କରିଥାଆନ୍ତି । ଯଥା — "ତମେ ଯାହା କହ ପଛକେ ବିମଳକୃଷ୍ଣ କେବେ ମେଥିରେ ଭଳିବ ନାହିଁ", ' ତମେ ବିମଳକୃଷ୍ଣଙ୍କୁ ଭଉଁକାଇ ଦେବ ଭାବିଚ ?" ଇତ୍ୟାଦି ଇତ୍ୟାଦି ।

କଥିତ ଅଛି, ଥରେ ଜଣେ ଆମେରିକାନ ସାମ୍ବାଦିକ ତାଙ୍କ ସହିତ ସାକ୍ଷାତ୍ କରିବାକୁ ଆସନ୍ତି । ସେ ଚୌକିରୁ ଉଠିପଡ଼ି ତାଙ୍କୁ ସଂବର୍ଦ୍ଧନା କରିବା ପାଇଁ ତାହାଙ୍କ ହାତଟି ବଢ଼ାଇ ଦେଇ ନିଜକୁ ପରିଚିତ କରାଇ ଦିଅନ୍ତି ମୁଁ ବିମଳକୃଷ୍ଣ ପଟ୍ଟନାୟକ । ଆଗନ୍ତୁକ ଭଦ୍ରଲୋକ ଏଡ଼େ ବଡ଼ ନାମଟିର ତାତ୍ପର୍ଯ୍ୟ ବୁଝି ନ ପାରି ଟିକିଏ କାନ୍ଥସୁ ଦୃଷ୍ଟିରେ ଚାହିଁବାରୁ ଅଗତ୍ୟା ତାଙ୍କୁ ନିଜ ନାମର ଇଂରାଜୀ ତର୍ଜମା କରି ବୁଝାଇ ଦେବାକୁ ପଡ଼େ । ବିମଳ ମାନେ ବିଶୁଦ୍ଧ, Pure, କୃଷ୍ଣ = କୃଷ୍ଟିସମ୍ପନ୍ନ, Cultured, ପଟ୍ଟ = Supreme ମହାନ, ନାୟକ = Leader, ନେତା, ଅର୍ଥାତ୍ ମୁଁ ହେଉଛି, 'ବିଶୁଦ୍ଧ କୃଷ୍ଟିସମ୍ପନ୍ନ ମହାନ୍ ନେତା' । I am the pure, Cultured Supreme Leader । ବିଦେଶୀ ଭଦ୍ରଲୋକ କୁଆଡ଼େ ଏଇ ନାମ—ମହାତ୍ମ୍ୟ ଶୁଣି ତାଟକା ହୋଇଯାଆନ୍ତି ଏବଂ ତାଙ୍କ ଦେଶରେ ଏଭଳି ସୁନ୍ଦର ଅର୍ଥପୂର୍ଣ୍ଣ ନାମ ନାହିଁ ବୋଲି ସ୍ୱୀକାର କରିଥିବାର ପରେ ବିମଳକୃଷ୍ଣ ବାବୁଙ୍କଠାରୁ ଜଣାପଡ଼େ ।

(କୌଣସି ବୈଦେଶିକ ପରିଦର୍ଶକ ନିଜ ଦେଶର ବୈଜ୍ଞାନିକ କୀର୍ତ୍ତି ଯଥା ଚନ୍ଦ୍ରଯାନ ପ୍ରସ୍ତୁତି ବିଷୟରେ କହିଲାବେଳେ ବିମଳକୃଷ୍ଣ ବାବୁ ଆମ ଦେଶର ଅନଗ୍ରସରତା ବିଷୟ ଭାବି ସାତିଶୟ କ୍ଷୁର୍ଣ୍ଣ ହେବାର ଦେଖାଯାଏ । ତାଙ୍କ ମୁହଁ ଟ୍ରାସ୍ କଳାପଡ଼ିଯାଏ । ତାଙ୍କ ହୃଦୟ ଭିତରୁ କୋହ ଉଠେ । ସେ କ୍ଷୋମନବାକ୍ୟରେ ଗୁହାରନ୍ତି ଆମ ଦେଶର ପଛଆଡ଼ ପୃଥିବୀର ସବୁ ଦେଶକୁ ବଳିଯାଉ; ଭାରତବର୍ଷ ସବୁ ଦିଗରେ ଉନ୍ନତ କରି ଅନ୍ୟାନ୍ୟ ଦେଶଙ୍କୁ ପଛରେ ପକାଇ ଦେଉ, ମାତ୍ର ସେ ଉନ୍ନତିଟା ତାଙ୍କର ଦ୍ୱାରା କିମ୍ବା ତାଙ୍କର ଜରିଆରେ ହେବା ଉଚିତ ବୋଲି ତାଙ୍କର ଗୋଟାଏ ବଦ୍ଧମୂଳ ଧାରଣା ରହିଯାଇଚି । ଶୁଣାଯାଏ, ଥରେ ଜଣେ ମାର୍କିନ୍ ପରିଦର୍ଶକ ଆପୋଲୋ-୧୬ର ଚନ୍ଦ୍ରଶିଳା ସଂଗ୍ରହ ବିଷୟ କହୁଥିବାବେଳେ ବିମଳକୃଷ୍ଣ ବାବୁ କରୁଣ ବିଷର୍ଣ୍ଣ ବଦନରେ ବସିରହି ସେସବୁ ଶୁଣୁଣୁ ହଠାତ୍ ବଡ଼ ପାଟିରେ କହି ଉଠନ୍ତି—ଆପୋଲୋ-୧୬ କ'ଣ କହୁଚ ହେ ? You know we had our Narada ଯେ କି ଟିଙ୍କରେ ଚଢ଼ି ଖାଲି ଚନ୍ଦ୍ର କ'ଣ ସବୁ ଗ୍ରହ ଉପଗ୍ରହକୁ, ମାନେ ସୂର୍ଯ୍ୟ, ବୁଧ, ଶୁକ୍ର, ଶନି, ମଙ୍ଗଳ ଆଦି ଗ୍ରହକୁ ମନଇଚ୍ଛା ଯାଇ ଆସି ପାରୁଥିଲେ । ସେ ସ୍ୱର୍ଗରୁ ପୃଥିବୀକୁ ଆସି ପାରୁଥିଲେ ଏବଂ ପୃଥିବୀରୁ he was going upstairs । ଶେଷ ଶବ୍ଦଟା କହିଲାବେଳେ ସେ ଚଉକିରୁ ଉଠିପଡ଼ି ଉପରଆଡ଼କୁ ଗୋଟାଏ ହାତ ଟେକି ଦେଉଥିଲେ । ତା'ପରେ ସେ ଯୋଗ କରନ୍ତି, You know we had

our Vishalyakarani — । ବିଦେଶୀ ଭଦ୍ରଲୋକ ନାରଦ, ଚିଂକ, ବିଶଲ୍ୟକରଣୀ ପ୍ରଭୃତି ଶୁଣି ଅବାକ୍ ହୋଇଯାଇ କଥାର ମୋଡ଼ ଅନ୍ୟ ପ୍ରସଂଗକୁ ଫେରାଇ ନେଇଥିବାର ଶୁଣାଯାଏ ।)

କମଳବାବୁ ଭାବଂତି କୁଆଡ଼େ ଗଲା ସେ କାଳ ? ସେ ତ୍ୟାଗ ଓ ସଂଗ୍ରାମର ସରଳ ନିର୍ମଳ, ଅକପଟ ଜୀବନ !! ଆଜିକାଲି ତ ସମସ୍ତେ ଅର୍ଥ ପିଛା ହେଲେ ।

ସ୍ୱାଧୀନତା ଆସିଲା । ତା ସଂଗେ ଆସିଲା ମଂତ୍ରିତ୍ୱ । କିଂତୁ କମଳକୃଷ୍ଣ ବାବୁ ଯେଉଁ ପଣ ଥିଲେ ସେଇ ପଣ ରଖିବାକୁ ସୁଖପାଇଲେ । ସେ ବିଶେଷ ବଦଳିବାକୁ ରାଜି ହେଲେ ନାହିଁ । କିଂତୁ କ୍ରମେ କ୍ରମେ କ'ଣ ହେଲା ? ମାତ୍ର କୋଡ଼ିଏଟା ବର୍ଷ ଭିତରେ ସମଗ୍ର ଦେଶଟା ଗଲା ବଦଳି । ଲୋକେ ବଦଳିଗଲେ ? ଗ୍ରାମର ଜାଗାରେ ଦାମୀ ଦାମୀ ବଡ଼ ବଡ଼ କୋଠାଘର ସବୁ ଦେଖାଦେଲା । ଧଡ଼ଧଡ଼ା ସାଇକେଲ ଜାଗାରେ ନୂଆ ନୂଆ ମଡେଲର ମୋଟରଗାଡ଼ି ସବୁ ଆସି ଛୁଟିଲା ହେଲା । ସେ ଦିନର ସ୍ୱରାଜ୍ୟ ପାଂଠିକୁ କିଂବା କୃଷକ ଫଂଡ୍‌କୁ ଖୁଦ୍‌ଗୁଣ୍ଡିଲା ମୁଷ୍ଟିଭିକ୍ଷା କରୁଥିବା କର୍ମୀମାନେ ଆଜି ବଡ଼ ବଡ଼ ମଠର ମହଂତଙ୍କ ପରି ଦେଖାଯାଉଛଂତି । କଏ ନୂଆ ରାଜଧାନୀରେ ଦି'ତିଟା ଅଟ୍ଟାଳି ତୋଳାଇ ସାରିଲାଣି ତ କିଏ ନିଜ ଗାଁରେ ଦଶବିଶ ଜମିର ମାଲିକ ହୋଇ ବସିଗଲାଣି । ତାଂକ ଦେଖଂତରେ ଯେଉଁମାନେ କାଲି ଆଶ୍ରମ ମାନଂକରେ 'ରଘୁପତି ରାଘବ ରାଜାରାମ' କରୁଥିଲେ, ଆଜି ସେମାନେ ପରମିଟ୍ ଲାଇସେନ୍‌ସ ମାଲମାଲ କରୁଛଂତି । କିଂତୁ ସେ ନିଜେ କୋଡ଼ିଏ ବର୍ଷତଳେ ଯେଉଁଠି ଥିଲେ ଠିକ୍ ସେଇଠି ନହେଲେ ବି ପ୍ରାୟ ସେଇଠି ଛିଡ଼ା ହୋଇ ରହିଛଂତି, ଚଂକିବାକୁ ନାହିଁ ।

ଗାଁର ସେ ପୈତୃକ ଆଟୁ ଘର ଖଂଡ଼ିକ କରଂ ଦିନକୁ ଦିନ ଅଧିକ ଖଂଡ଼ିଆ ଖୋବରା ହୋଇଯାଉଚି । ପେଂଶନ ହିସାବରେ ସେ ଯାହାପାଆଂତି, ତାକ ତାଂକ ଘରକୁ କାରଣ ଅକାରଣରେ ଆସୁଥିବା କର୍ମୀ, ସଂଗୀ, ସାଥୀ ଓ ଅଭ୍ୟାଗତ ମାନଂକର ଖାଇବା ପିଇବାରେ ହିଁ ଖର୍ଚ ହୋଇ ଯାଏ । ତା ଉପରକୁ ଅଛି ପୁଣି ନାନା ପ୍ରକାର ଚାଂଦା, ଭେଟି ଇତ୍ୟାଦି ଇତ୍ୟାଦି ।

ଏଥିପାଇଁ ତାଂକୁ ତାଂକର ସହକର୍ମୀମାନଂକର ଉପହାସର ପାତ୍ର ହେବାକୁ ହୁଏ । ତାଂକର ସଙ୍ଗୀସଂଗୀମାନେ ତାଂକୁ ମରହଟ୍ଟି ସ୍ୱା, ମାନ୍ଧାତା ସ୍ୱା ଆଦିକହି ବିଦ୍ରୂପ କରଂତି । ଏପରିକି ତାଂକ ବିଭାଗୀୟ ଉପମଂତ୍ରୀ ମଧ୍ୟ ତାକୁ ପାସଗରେ ପକଂତି ନାହିଁ । ସେକ୍ରେଟାରୀ, ଅମଲା, ଚପରାସୀ ମଧ୍ୟ, — ସଦାଚ ବାହାରେ ଲଂବ ଲଂବ ଦାଂଡ଼ବତ ପକାଇବାରେ କିଂବା 'ହଁ ସାର୍, ହଁ ସାର୍' କହିବାରେ କେହି ତ୍ରୁଟି କରଂତ ନାହିଁ ।

କମଳକୃଷ୍ଣ ବାବୁ ଯେ ଏହା ନ ବୁଝଂତି ବା ଦେଖିକୁ ନ ପାଆଂତି ତା ନୁହେଁ । ସେ ସବୁ ଦେଖଂତି, ସବୁ ବୁଝଂତି । ମାତ୍ର ତାଂକର ଅଟଳ ପ୍ରତିଜ୍ଞା ସେ ସେ ନିଜ କେଂଦ୍ରକୁ

ଚଳିବେ ନାହିଁ । ସେ ବିଦ୍ରୋହ କରିବେ, ବିପ୍ଲବ କରିବେ, ଠିକ୍ କେତେ ଏ ବର୍ଷ ତଳେ ଯେପରି କରୁଥିଲେ ; ମାତ୍ର ଏ ଏକଲ ଓ ନିଷ୍ଫଳ ବିଦ୍ରୋହର ଅଗ୍ନିଶିଖା କେବଳ ତାଂକର ବଂଗଳାର ହତା ଏବଂ ସେକ୍ରେଟାରିଏଟ୍ କୋଠରିର ସୀମା ଟପି ବେଶୀ ଦୂର ପ୍ରସାରିତ ହୋଇପାରେ ନାହିଁ ।

ବିସ୍ତୃତ ଜନସଂଘମାନଂକରେ ସେ ସଦାଗ୍ରହ ଓ ଆଦର୍ଶବାଦ ପ୍ରଚାର କରିବାକୁ ହିଁ ମୁଖ୍ୟ କର୍ତ୍ତବ୍ୟ ବୋଲି ମନେ କରୁଥିଲେ । ସରକାରୀ କାର୍ଯ୍ୟ ସମ୍ପାଦନ କରିବା ଥିଲା ଗୌଣ । କ୍ରମେ ତାଂକ ସମ୍ପର୍କରେ ଲୋକେ ଅଧୀର ହେବାକୁ ଲାଗିଲେ । "ହଁ ବିମଳବାବୁ ମଂତ୍ରୀନା, ସେ କ'ଣ କହିବେ ଆମେ ଜାଣୁ । ସତ୍ୟ, ଅହିଂସା, ସଂଯମ, ସେ କିପରି ଶାଗ ଭାତ ଖାଆଂତି, ସୂତା କାଟଂତି ଏଇ କଥାତ, ଆମେ ସବୁ ଜାଣିଚୁ । ହେଲେ ବଡ଼ ଭଲ ଲୋକଟାଏ । ଖାଂଟି ସୁନା ଖଂଡେ । ସେଭଳି ଆଉ ଜଣେ ଦି'ଜଣ ଲୋକ ଥିଲେ ଦେଶର ଏଭଳି ଦୁର୍ଦ୍ଦଶା ହୋଇନଥାଂତା । ଏ ପାଲଟୁଂଟାଙ୍କ ଭିତରେ ସେଇ ଜଣଙ୍କ କେବଳ ଭଲଲୋକ । ସାଙ୍ଘାଟିକ !

ବିମଳକୃଷ୍ଣ ବାବୁଂକର ବଦ୍ଧ ଧାରଣା ହେଲା ଯେ ଲୋକେ ତାଂକୁ ଠିକ୍ ବୁଝିପାରୁ ନାହାଂତି । ସେଥିପାଇଁ ବେଖାତିର କରୁଛଂତି । ତାଂକର ଏ ଧାରଣା ବେଳେ ବେଳେ ଅଭିମାନ ଏବଂ ବେଦନା କ୍ୱଚିତ୍ ବିଦ୍ରୋହରେ ପରିଣତ ହେଉଥିଲା । ମାତ୍ର ତାଂକର ଅଭିମାନ ବା ରାଗ କେବଳ କ୍ଷଣକ ପାଇଁ, ତା'ପରେ ଯେଉଁ କଥାକୁ ସେଇକଥା ।

ତାଂକର ଆହତ ବ୍ୟକ୍ତିତ୍ୱ ବେଳେବେଳେ ଯଂତ୍ରଣାରେ ଛଟପଟ କରୁଥିଲା । ସେ ଦୁନିଆ ଉପରେ ବିରକ୍ତ ହୋଇ ଉଠୁଥିଲେ । ଏଇ ଭ୍ରଷ୍ଟାଚାରୀ ସମାଜକୁ ଉଚିତ ଶିକ୍ଷା ଦେବା ଉଚିତ୍ । ତେବେ ଯାଇ ଏମାନର ମୋଡ଼ ଫେରିବ । ବିଦ୍ରୋହ କରି ଏଡ଼େ ବଡ ବ୍ରିଟିଶ ସରକାରକୁ ତଡ଼ି ଦିଆଯାଇ ପାରିଲା, ବଡ଼ ବଡ଼ ରାଜା ରାଜୁଡ଼ାଏ—ନିଜାମ, ଗାଏକଓ୍ୱାର୍ଡ଼ କିଏ କୁଆଡ଼େ ପାଣି ଫୋଟକା ପରି ଉଭେଇ ଗଲେ । କ'ଣ ଥିଲା ସେତେବେଳେ ଅସ୍ତ୍ରଶସ୍ତ୍ର, ଗୁଳିଗୁଳା ଫୌଜ କମାଣ କିଛିତ ନଥିଲା. ଥିଲା କେବଳ ଆତ୍ମବଳ ନିଜକୁ ନିଜେ ଦେବାର ବାସନା । ଆଉ ଏ ମୂର୍ଖ ଦୁର୍ନୀତିଗ୍ରସ୍ତ ଗୋଷ୍ଠିଦ ସମାଜ—ସ୍ୱାଙ୍କୁ କ'ଣ ସାଏସ୍ତା ଦେଇ-ହେବନାହିଁ ? ଅଳବତ କରିହେବ । ତାଂକ ଭିତରର ବିଦ୍ରୋହୀ ପୁଣି ରଣ ହୁଂକାର କରି-ଉଠେ । କିଂତୁ ପରମୂହୂର୍ତ୍ତରେ ସେ ନିଜର ମାନ ମର୍ଯ୍ୟାଦା ଓ ଦଳର ଦାୟିତ୍ୱ କଥା ଭାବି ମନ୍ତ୍ରୀ ଶାଂତ ସଂହତ ହୋଇ ପଡ଼ଂତି, ପୁଣି ନିର୍ବାଦ ମେଂଢ଼ା ଭୁଆଂଟି ପରି ନିଜ ଅଫିସରେ କିଂବା ବଂଗଳାରେ ସମସ୍ତଂକ କଥାରେ ହଁ ନାହିଁ ଭରି, କେଉଁଠି ବା ମୁଣ୍ଡ ହଲେଇ କେବଳ ଭଗ୍ନାର ସ୍ୱରତୋଳି ନିଧଡ଼ନିଆ ଅଷ୍ଟପ୍ରହରୀ ଜୀବନ ବିତାଉ ଥାଅଂତି ।

ବେଳେ ବେଳେ ସେ ଅନୁଭବ କରଂତି ଖୁବ୍ ଶ୍ରାଂତ, କ୍ଲାଂତ, ସତେ ଯେମିତି ଦୀର୍ଘକାଳ ବେମାର ଭୋଗି ଏଇମାତ୍ର ବିଛଣାରୁ ଉଠି ଆସିଂଛଂତି । ଭାବଂତି ଆଉ ସଂଗ୍ରାମ କରି ଲାଭ-ନାହିଁ । ଏ ସବୁଥିରୁ ବରଂ ଆଡ଼େଇ ହୋଇଯିବା ହିଁ ଭଲ ।

ନିୟମିତ ଗୀତାପାଠ କରିବା ତାଙ୍କର ଏକ ଚିରଦିନର ଅଭ୍ୟାସ । ତା ସାଙ୍ଗକୁ ମିଳେ ବାପୁଙ୍କ ପ୍ରବଚନ, ଗାନ୍ଧିଜୀଙ୍କ ଗ୍ରନ୍ଥ । ଶେଷରେ ବିନୋବାଜୀଙ୍କ ବାଣୀ ଏବଂ ଅରବିନ୍ଦଙ୍କ ଦିବ୍ୟ ଜୀବନର ସ୍ୱପ୍ନ. ଏ ସମସ୍ତ ଭିତରୁ ସେ କେବଳ ଗୋଟାଏ କଥା ବିଚାର କରିବାକୁ ଚାହୁଁଥିଲେ । ତା ହେଉଛି ବାପୁଙ୍କ ମତ ସମାଧାନ, ମାନବ ମୁକ୍ତିର ଲାଗି ମାନବ ସେବା ।

ସେଦିନ ସେ ବିଶେଷ କ୍ଳାନ୍ତ ଓ ଚିନ୍ତିତ ଦେଖା ଯାଉଥିଲେ । ଏକ ନିର୍ଜନ କଳାଶ୍ରମ ସ୍ୱତନ୍ତ୍ର ଦାଣ୍ଡବାରଣ୍ଡାରେ ଶ୍ୱେତବସ୍ତ୍ର ପରିହିତ ଜଣେ ନିରୁଛିଆ ଲୋକର ସିଲହାଉଟ୍ ପରି । ଶୀତ ଦିନରେ ମଧ୍ୟ ତାଙ୍କ କପାଳରୁ ବିନ୍ଦୁ ବିନ୍ଦୁ ଝାଳ ନିଗିଡ଼ି ପଡ଼ୁଥିଲା ।

ଏଇମାତ୍ର ସେ ଏକ ସଭା ଶେଷକରି ଆସି ଗ୍ରାମର ସ୍କୁଲ ଘରେ ବସିଛନ୍ତି, ସାଙ୍ଗରେ ମତ୍ସ୍ୟ ବିଭାଗର ମନ୍ତ୍ରୀ ବିପ୍ରଚରଣ ବାବୁ । ବିମଳବାବୁ ବକ୍ତୃତା ଦେଇ ଦେଶରେ କପଟ ଦୁର୍ନୀତି ବ୍ୟାପ୍ତି ସମ୍ବନ୍ଧ—ମନ୍ତ୍ରୀଠାରୁ ଆରମ୍ଭ କରି ଅମଲା ପର୍ଯ୍ୟନ୍ତ ସମସ୍ତେ କପଟ ଲୋଭ ବିଳାସରେ ବୁଡ଼ି ଗଲେଣି, ଗାନ୍ଧିଜୀଙ୍କ ପରିକଳ୍ପିତ ସ୍ୱରାଜ୍ୟ କିପରି ବିଡ଼ମ୍ବନାରେ ପରିଣତ ହୋଇଲାଣି—ସେ ବିଷୟ ସୁନ୍ଦର ଭାବରେ ବୁଝାଇଦେଲେ । ପୁରାଣ ଓ ଇତିହାସରୁ ନାନା ଦୃଷ୍ଟାନ୍ତ ଦେଲେ । ଶେଷରେ ନିଜର କୃଚ୍ଛ୍ର ସାଧନା ଓ ସଂସାର ବିମୁଖତା ବିଷୟରେ ମଧ୍ୟ ପରୋକ୍ଷ ଓ ପ୍ରକାଶ୍ୟ ଭାବରେ କିଛି କହି ବକ୍ତବ୍ୟକୁ ପ୍ରଭାବଶାଳୀ କରିବାକୁ ଚେଷ୍ଟାକଲେ । ମାତ୍ର ସଭାରେ ଉତ୍ସାହ ନାହିଁ । କ୍ରମେ ଲୋକେ ଉଙ୍ଗିବାକୁ ଲାଗିଲେ । ମତ୍ସ୍ୟମନ୍ତ୍ରୀ ଦେଖିଲେ ମହାବିପଦ । ସେ କହିବାକୁ ଉଠିଲା ବେଳକୁ ହୁଏତ ସଭାରେ ଖାଲି ଚୌକି, ବେଞ୍ଚ କିମ୍ବା ଲାଇଟ ଆଣିଥିବା ଲୋକଟି ଛଡ଼ାକେହି ନଥିବେ । ସେ ବିମଳ ବାବୁଙ୍କୁ ବସିପଡ଼ିବା ପାଇଁ ଇଙ୍ଗିତ କଲେ । ଥରେ; ଦୁ'ଥର ତାଙ୍କ କାମିଜର ଝୁଲ ମଧ୍ୟ ଟାଣିଲେ । ମାତ୍ର ସେ ଅଟଳ, ଅଚଳ । ଶେଷରେ ବଜ୍ର କଣ୍ଠରେ କହିଦେଲେ—ସଭାରେ ଜଣେ ଲୋକ ଥିବା ପର୍ଯ୍ୟନ୍ତ ମୁଁ କହିବି । ମତ୍ସ୍ୟମନ୍ତ୍ରୀ ଛଟପଟ ହେଉଥାନ୍ତି । ଶେଷରେ ତାଙ୍କର ମୁଣ୍ଡରେ ଗୋଟାଏ ବୁଦ୍ଧି ଫୁଟିଲା । ସେ ଉଠିପଡ଼ି ଡାକବାକ ଯନ୍ତ୍ରଟାକୁ ଝିଙ୍କିନେଇ କହିଲେ, "ଭାଇ ଓ ଭଉଣୀମାନେ, ବକ୍ତୃତାପରେ ସରକାରଙ୍କ ପ୍ରଚାର ବିଭାଗ ସିନେମା ଦେଖାଇବେ । ଭଲ ବହି ଅଛି । କଟକରୁ ବଡ଼ ବଡ଼ ରେକର୍ଡ଼ ଆଣିଛନ୍ତି, ତାହା ମଧ୍ୟ ଶୁଣାଇବେ । ଆପଣ ଧୀର ସ୍ଥିର ହୋଇ ନିଜ ନିଜ ଜାଗାରେ ବସି ରହନ୍ତୁ ନୋହିଲେ ସୁବର୍ଣ୍ଣ ସୁଯୋଗ ହରାଇବେ ।" ପୁଣି ସଭାସ୍ଥଳ ସରଗରମ ହୋଇ ଉଠିଲା । ଅନେକେ ନିଜ ନିଜ ଜାଗା ଛାଡ଼ି ଚାଲିଯାଇଥିବା ଯୋଗୁ ଅନୁତାପ କରି ପୁଣି ପୂର୍ବସ୍ଥାନ ଦଖଲ କରିବା ଲାଗି ଧସ୍ତାଧସ୍ତି ଆରମ୍ଭ କରିଦେଲେ ।

ଶେଷରେ ମତ୍ସ୍ୟମନ୍ତ୍ରୀ ଦୀର୍ଘ ଭାଷଣ ଦେଲେ । ଲୋକେ ଧୀରସ୍ଥିର ଭାବରେ ବକ୍ତୃତା ଶୁଣୁଥାନ୍ତି । ଛୁଞ୍ଚିଟାଏ ପଡ଼ିଗଲେ ମଧ୍ୟ ଶୁଣାଯିବ । କେହି ଉଠି ଚୁ ପାଟି

ଫିଟାଉ ନଥାଂନ୍ତି । ଏ ପଶକ ସାମନା ଧାଡ଼ିରେ ପାଟି ଚୁପ୍‌ କରୁଥିବା ନାପ୍ରାସ୍କୁଲର ପିଲାମାନେ ମଧ୍ୟ ନୀରବ, ନିଷ୍ପନ୍ଦ ।

ସଭାପରେ ମଂତ୍ରୀ ଓ ନିମଂତ୍ରିତ ଅତିଥିମାନଂକ ପାଇଁ ସ୍କୁଲ ଘରେ ସାନ୍ଧ୍ୟଭୋଜନର ବ୍ୟବସ୍ଥା ହୋଇଥାଏ । ବିମଳ କୃଷ୍ଣବାବୁ ମୁହଁ ଭାରକରି ଗୋଟାଏ ଗ୍ରେଟ ଟେବୁଲ ପାଖରେ ଦୃରେଇ ହୋଇ ବସିଥାଂନ୍ତି । ଅନ୍ୟମାନେ ବିଶେଷତଃ ମନ୍ତ୍ୟମଂତ୍ରୀ ଗାଁର ମୁଖିଆ ବ୍ୟକ୍ତି ଓ ସରପଂଚଂକ ସହିତ ସମାଘୋଟ ଆଲୋଚନା ଜମାଇ ଦେଇଥାଂନ୍ତି । ମାତ୍ର ବିମଳକୃଷ୍ଣ ବାବୁଂକର ସେଥିରେ ଆଗ୍ରହ ନାହିଁ । ସେ ବଡ଼ ନିସ୍ପୃହିଆ ମନେ ହେଉଥାଂନ୍ତି । ଏ ଦୁନିଆରେ ସେ ଯେପରି ଏକା – ଭୀଷଣ ଏକା—ସଂଗୀ ସାଥୀ ନଥିବା ଏକ ନିର୍ଜନ ଦ୍ୱୀପରେ ବାସିନ୍ଦା ଭଳି । ଖାଇବା ପରଷା ହେଲା । ଚର୍ବ୍ୟ, ଚୋଷ୍ୟ, ଲେହ୍ୟ, ପେୟ ନାନା ପ୍ରକାର ଖାଦ୍ୟଦ୍ରବ୍ୟ ଭୋଜନ ସ୍ଥାନକୁ ଅଣାଗଲା । ଭାତ, ଡାଲି, ଶାଗ ପରଷା ସାରିବା ପରେ ବିମଳ କୃଷ୍ଣବାବୁ ହାତ ଦେଖାଇ ଆଉକିଛି ପରଷିବାକୁ ମନା କରିଦେଲେ । କହିଲେ, ମୁଁ ଭାତ ଡାଲମା ହିଁ ଖାଇବ । ଗ୍ରାମର ଯୋଗାଡ଼ିଆମାନେ ଯେଉଁମାନେ କି ଏ ଉତ୍ସବର ଆୟୋଜନ କରିଥିଲେ, ସେମାନଂକର ମୁହଁ କଳା ପଡ଼ିଗଲା । ସେମାନେ ସତରେ ବଡ଼ ଦସ୍ତୁଘସ୍ତ ଦେଖାଗଲେ । ମାତ୍ର ବିମଳ କୃଷ୍ଣବାବୁ କଠୋର ଭାବେ କହିଲେ—

"ମୁଁ ଭାତ ଡାଲମା ହିଁ ଖାଏ, ସେଇଆ ଖାଇବ । ଯେତେବେଳେ ଲକ୍ଷ ଲକ୍ଷ ଲୋକ ଭୋକ ଉପାସରେ, ବଢ଼ି ମରୁଡ଼ିରେ ମରୁଛଂନ୍ତି, କାନସିଝ ଶାଗ କେରାଏ ମଧ୍ୟ ମିଳୁନାହିଁ, ସେତେବେଳେ ଆମେ ଭୋଜି ଭାତରେ ମୌଜ ମଜଲିସ୍‌ କରିବା ଅନ୍ୟାୟ ।"

ସେ ଅଂଚଳର ସରପଂଚ ଓ ବି. ଡି. ଓ. ସମସ୍ତେ ହାତଯୋଡ଼ି ଛିଡ଼ା ହୋଇଥାଂନ୍ତି । ସେମାନେ ଅଳିକଲେ—"ଆଜ୍ଞା ! ରୋଷାବଢ଼ା ତ ହୋଇ ସାରିଲାଣି, ନଷ୍ଟ ହେବସିନା; ଆଗରୁ ଜାଣିଥିଲେ ହୁଏତ କରି ନଥାଂନ୍ତୁ ।"

ବିମଳକୃଷ୍ଣବାବୁ ତତୋଽଧିକ କଠୋର ସ୍ୱରରେ କହିଲେ, "ନଷ୍ଟହେବ କାହିଁକି ଗରିବ ଲୋକଂକୁ ଖୁଆଇଦିଅ ।"

ସରପଂଚ ମୁଂଡ ଆଉଁସିବାକୁ ଲଗିଲେ । ଏତିକିବେଳେ ମନ୍ତ୍ରୀ ମହୋଦୟ ଏ ବିପଦରୁ ଉଦ୍ଧାର କଲେ । କହିଲେ, "ଆଣନ୍ତୁ ସରପଂଚେ ଯାହା ହୋଇଛି ଆଣ, ଆମେ ସମସ୍ତେ ଖାଇବା । ସେ ବାବାଜୀ ଲୋକ, ତାଂକ କଥା ଛାଡ଼ । ତାଂକ କଥା ଧରନ୍ତୁ ନାହିଁ ।" ସରପଂଚ ଓ ବି. ଡ଼ି. ଓ ଆଶ୍ୱସ୍ତ ହେଲେ ।

ଖାଇ ବସିଲା ବେଳେ ଦେଖାଗଲା ସମସ୍ତଂକ ନଜର ବେଶୀ ମନ୍ତ୍ରୀମଂତ୍ରୀ ଓ ଅନ୍ୟ ସେଲ ଖାଇବା ବାଲାଂକ ଉପରେ । ଲୋକଂକ ଭିଡ଼ ସେଇମାନଂକ ପାଖେ ବେଶୀ । କିଏ ମାଛ ତରକାରି ନେଇ ପହଂଚୁଛି ତ କିଏ ମାଉଁସ ବାଲ୍‌ଟି ଧରି ହାଜର ।

—ଆଜ୍ଞା, କିଛି ମାଛର ବେପାର ?

—ଆଜ୍ଞା, ମାଂସର କୋର୍‌ମା ?

ମନ୍ତ୍ରୀମଂତ୍ରୀ ଓ ଉଚ୍ଚ ପାହ୍ୱାର ଅଫିସରମାନେ ନାଁ, ନା; ହଁ. ହଁ, ହଉ, ହଉ ଭଳି ସେମାନଙ୍କୁ ଆପ୍ୟାୟିତ କରୁଥାଂନ୍ତି । ପୁଣି 'ଭଲ ଦୋକାନ', 'ବଢ଼ିଆ ଦୋକାନ', ଭଳି ସାର୍ଟିଫିକେଟମାନ ବିତରଣ କରୁଥାଂନ୍ତି । ଶେଷରେ ବସ୍ତ ଦହି, ସାଳେପୁର ରସଗୋଲ୍ଲା ଓ କେଂନ୍ଦ୍ରାପଡ଼ା ରସାବଳୀ ।

କେହୁ ସାହସ କରି ବିମଳ କୃଷ୍ଣବାବୁଙ୍କ ପାଖରେ ପହଞ୍ଚୁନଥାଂନ୍ତି । ଦୀର୍ଘ ଅଧଘଂଟାଏ ଖାଇବା ସମସ୍ତ ଭିତରେ କେବଳ ଥରେ ମାତ୍ର ସରଧାଂରେ ସାଇ ପଚାରିଥିଲେ —"ଆଜ୍ଞା, ଆଉ ମୁଠାଏ ଅନ୍ନ, କିଛି ଡାଲମା ?"

ବିମଳକୃଷ୍ଣ ବାବୁଙ୍କର କଠୋର ନାହିଁ ଶବ୍ଦ ଶୁଣି ସେ ଫେରି ଆସିଂଛନ୍ତି, ଆଉ ପାଖ ମାଡ଼ିଂନ୍ତି ନାହିଁ ।

ବିଦାୟ ନେଇ ଗଲାବେଳେ ମଧ୍ୟ ବିମଳକୃଷ୍ଣ ବାବୁଙ୍କ ମୁହଁ ସେହିପରି ଗମ୍ଭୀର ଗମ୍ଭୀର ଜଣା ଯାଉଥାଏ । ତଥାପି ସେ ସମସ୍ତଂକଠୁ ହସି ହସି ବିଦାୟ ନେଲେ । କାହା କାଂଧରେ ଟିକିଏ ହାତ ବୁଲାଇ ଦେଲେ । କେଉଁ ଯୁବକସଙ୍ଘ କର୍ମୀକୁ ହସି ହସି ପଚାରିଲେ, "ବାପା ଭଲ ଅଛଂନ୍ତି ତ ?" (ଯଦିଚ ସେ ପିଲାଟିର ବାପ ଛେଳିଂଡ ଏବଂ ସେ ଟିକିଏ ଅପ୍ରସ୍ତୁତ ହୋଇ ମୁଂଡ ହୁଂଗାଇଲା ।) ମାତ୍ର ଲୋକେ ତାଂକଠୁ ଟିକିଏ ଅଡ଼ୁଢ଼ା ବୋଲିପରି ମନେ ହେଉଥାଏ । ଭରସି କରି କେହୁ ପୂର୍ବପରି ତାଂକ ସଂଗେ ମିଶି ପାରୁନଥାଂନ୍ତି ।

କେତେଦିନ ପରେ ନର୍ସିଂହପୁର ଗ୍ରାମରେ ଆଉ ଏକ ସଭାର ସମାରୋହ । ବିମଳକୃଷ୍ଣ ବାବୁ ତାଂକର ନିର୍ବାଚନ ବେଳର ପୁରୁଣା ଜିପ୍‌ରେ ଦୁଇ ଘଂଟା ଡେରିରେ ସଭାସ୍ଥଳରେ ପହଂଚିଲେ । ସଭାରେ ଗୋଟିଏ ଲେଖିଥିବା ପଚାଂତ ସତ୍ୟ ଓ ଅହିଂସାର ଉପରେ ଭାଷଣ ଦେଲେ । ତା'ପରେ ଭୋଜନପାଳି । ଖାଇ ବସିଲାବେଳେ ପୁଣି ସେଇ ସଙ୍କଟ ଦେଖାଦେଲା । ବିମଳବାବୁ କହିଧରି ବସିଲେ : ସେ ଖାଲି ଡାଲମା ହିଁ ଖାଇବେ । ଉପସ୍ଥିତ ଭଦ୍ରବ୍ୟକ୍ତିମାନେ ନେହୁରା ହେବାରୁ ସେ ଶାଗ ଟିକିଏ, ସଂଗୃହୀତ ଅଫିସ ହତାରେ ଫଳିଥିବା ବାଇଗଣ ଭଜା ଦି'ଖଂଡ ପରଷିବାକୁ ଯାହା ଅନୁମତି ଦେଲେ; କିଂତୁ ମାଛ ମାଂସ ଛୁଇଁଲେ ନାହିଁ । ଶେଷରେ ସରପଂଚ ସାହାଂକର ପ୍ରଖର ବୁଦ୍ଧି ସମଗ୍ର ମଂଡଳରେ ପ୍ରସିଦ୍ଧ, ହାତସେନ୍ତା ଜଣାଇଲେ ଯେ, ଇସ୍କୁଲ ପୋଖରୀରୁ ଆଜି ସେ ନିଜେ ଖୋଜି ପକାଇ ଗୋଟିଏ ଶ୍ରେଷ୍ଠ ମାଗୁର ଧରିଥିଲେ । ସେଇଟି ସେ ମଂତ୍ରୀ ମହୋଦୟଙ୍କ ପାଇଁ ଅଲଗା ଭଜାଇ କରି ରଖିଛଂନ୍ତି । ତାଂକର ଆଂତରିକତା, ଆନୁଗତ୍ୟ ଓ ସରଳତାରେ ମଂତ୍ରୀ ମୁଗ୍ଧ ହେଲେ । "ହଉ ଖାଲି ସେତିକି ଦିଅ" ବୋଲି ଅନୁମତି ଦେଲେ ।

କିଛିଦିନ ପରେ ଅନ୍ୟ ଏକ ଜିଲ୍ଲାରେ କାଂଦଲପୁର ଗ୍ରାମରେ ଆଉ ଏକ ସଭାର ଆୟୋଜନ । ସେତେବେଳକୁ ଗୃହଆଡ଼େ ଲୋକମାନଙ୍କରେ ପ୍ରଚାର ହୋଇଗଲାଣି ଯେ କମଳବାବୁ ମନ୍ତ୍ରୀ ଭାତ ଡାଲମା ଛଡ଼ା ଅଉ କିଛି ଛୁଅଁନ୍ତି ନାହିଁ । କଥାଟା ମୁଖ୍ୟମନ୍ତ୍ରୀ ଭଳି ପ୍ରଚାରବାସୀ ଖେଳିଗଲାଣି । ତେଣୁ ସଭାର ଉଦ୍ୟୋକ୍ତାମାନେ ମିତବ୍ୟୟିତା ଓ ଅମୂଲ ଦେଇବା ଗୃହଦ୍ୱାର ସ୍ୱଳ୍ପ ପରିମିତ ଦୃଷ୍ଟିରୁ କେବଳ ଭାତ ଡାଲମାହିଁ ପ୍ରସ୍ତୁତ କରିଅଛନ୍ତି । ସଭାରେ ଅଭ୍ୟର୍ଥନା, ମାନପତ୍ର ଓ ଭାଷଣ ଇତ୍ୟାଦି ପରେ ମନ୍ତ୍ରୀ ମହାଶୟ ମଣୋହିଙ୍କ ବଜେକଲେ । ଠା ପିଢ଼ାରେ ବସିବା ମାତ୍ରକେ ଧୁରନ୍ଧର ବି.ଡ଼ି.ଓ ନମ୍ର ସ୍ୱରରେ ନିବେଦନ କଲେ —ଆଜ୍ଞା, ସବୁକିଛି ରନ୍ଧା ଯାଇଚି । ମାଛ, ମାଂସ, ଅଣ୍ଡା, ପାଏସ, ଡାଲମା । ତାଙ୍କ ପାଟିରୁ କଥା ନ ସରୁଣୁ ମନ୍ତ୍ରୀ ହାତ ହଲାଇ କେବଳ ଭାତ ଓ ଡାଲମା ପରଷିବାକୁଇ ଆଦେଶ ଦେଲେ ।

ବି.ଡି.ଓ ଚଟାପଟ ଉତ୍ତର ଦେଲେ—"ଆଜ୍ଞା, ବଡ଼ୁର ପରେ ଶାଗଭାଜି । ଆମେ ଜାଣୁ ଆପଣ ଆଉ କିଛି ଛୁଇଁବେ ନାହିଁ । ହେଁ, ହେଁ ।"

ମନ୍ତ୍ରୀ ଖୁସି ହୋଇଗଲେ । ଏତେ ଦିନକେ ମନେହେଲା ଲୋକେ ତାଙ୍କର ନୀତିର ମର୍ମ ବୁଝୁଛନ୍ତି । ଜମେ ବୁଝିବେ, ଯିବେ କୁଆଡ଼େ ? ସେ ପ୍ରଶଂସା କରି କହିଲେ, ଲୋକେ ଖାଇବାକୁ ନପାଇ ମରୁଥିବାବେଳେ ଅମ ପିଛା ଖିଆପିଆ ଯାକଯମକରେ ଅର୍ଥ ବରବାଦ କରିବା ମହାପାପ । ଯାହାସବୁ ଭୋଜଭାତ କରିଚ ତା ସବୁ ନିଜେ ଖାଇଦିଅ, ଆଉ ଗରିବଙ୍କୁ ଦେଇଦିଅ । ସେଦିନ ମନ୍ତ୍ରୀଙ୍କ ପାଇଁ ଅଲଗା କରି ଏକ ସ୍ୱତନ୍ତ୍ର କୋଠରୀରେ ଠା ପିଢ଼ା କରାଯାଇଥିଲା ।

ତା'ପର ମାସକପରେ ଗଞ୍ଜାମ ଜିଲ୍ଲା ଶୁଳେଇ ଗାଁରେ ଗୋରକ୍ଷଣୀ ସଭାର ବାର୍ଷିକ ଉତ୍ସବ । ସଭାକାର୍ଯ୍ୟ ଶେଷକରି ମନ୍ତ୍ରୀ ଆପଣେ ଖାଇବାକୁ ବିଜେ କଲେ । ଗୋଶାଳାର ସମ୍ପାଦକ ସ୍ଥାନୀୟ ଉ.ପ୍ରା.ସ୍କୁଲ ହେ.ମା. ଓ ବି.ଡି.ଓ ଯେଉଁମାନେ କି ଏ ଉତ୍ସବରେ ଉଦ୍ୟୋକ୍ତା ଥିଲେ, ସମସ୍ତେ ଧର୍ମବିଶ୍ୱାସୀ ଓ ସରଳବ୍ୟକ୍ତି । ସେମାନେ ମନ୍ତ୍ରୀ ମହାଶୟଙ୍କର ଆନ୍ତରିକ ଭକ୍ତ ଓ ନୀତିର ଅନୁଗାମୀ କହୁଥିଲେ । ବି.ଡି.ଓ. ଅପର୍ତ୍ତି ବାବୁ ଖାଣ୍ଟି ବୈଷ୍ଣବ, ଗଳାରେ ତୁଳସୀମାଳି, କପାଳରେ ତିଳକ, ଆଉ ଛ'ମାସ ପରେ ଚାକିରିରୁ ଅବସର ନେବେ । ସେ ମନ୍ତ୍ରୀଙ୍କ ଠାପିଢ଼ା ପାଖରେ ବସି ଖାଇବା ଆଣିବା ପାଇଁ ବରାଦ ଦେଉଥାନ୍ତି । ଭାତ, ଡାଲମା ଏବଂ ତା ସାଙ୍ଗକୁ ସାରୁ ସନ୍ତୁଳା ଟିକିଏ ଅଣାଗଲା ।

ମନ୍ତ୍ରୀ ଆପଣେ ଖୁସିହୋଇ ଉଠିଲେ । ପଚାରିଲେ ଆଉ କ'ଣ କରିଚ ହେ ? ଅଉ ସବୁ ଯାହା କରିଚ ଆପଣମାନେ ଖାଇଦିଅ । ବି.ଡି.ଓ କହିଲେ, "ଆଜ୍ଞା, ଆଉ କିଛି କରିନାହୁଁ । ଲୋକେ ଯେତେବେଳେ ନଖାଇ ମରୁଛନ୍ତି, ଗୋରୁ ଗାଈସବୁ ଦାନା ଅଭାବରୁ କଙ୍କାଳହୋଇ ଗଲେଣି, ସେତେବେଳେ ଆପଣଙ୍କ ଶ୍ରୀମୁଖକୁ ଭାତ ଡାଲମା ଛଡ଼ା ଆଉ କିଛି ରୁଚିବ କିପରି ? ଆପଣ ହେଲେ ଆମର ଆଦର୍ଶ, ଆମ ଯୁଗର ରାଜର୍ଷି ଜନକ ହେଁ.... ହେଁ.... ।"

କମଳକୃଷ୍ଣ ବାବୁଂକ ମୁହଁ ଲାଲ ପଡ଼ିଗଲା । ତାଂକର ମନେହେଲା, ସମସ୍ତେ ତାଂକୁ ବେଖାତର କରୁଛଂତି । ତା ନହେଲେ ତାଂକ ଭଳି ଜଣେ ଗଣ୍ୟମାନ୍ୟ ଉଚ୍ଚପଦସ୍ଥ ବ୍ୟକ୍ତିଂକୁ ଏଭଳି ଖଡ଼ାସାବୁରେ ଅଭ୍ୟର୍ଥନା କରାଯାଇଥାଂତା ! ସେ ମନେ ମନେ ସମସ୍ତଂକ ଉପରେ —ଗୋଷ୍ଠୀ ସମାଜ ଉପରେ କ୍ରୁଦ୍ଧ ହୋଇ ଉଠିଲେ । ମାତ୍ର ଉପରେ ଈଷତ୍ ସ୍ମିତହାସ୍ୟ ହାସି ପ୍ରକାଶ କଲେ

“ହଁ, ଠିକ୍ ଅଛୁ ! ଜଲଦି ଆଣ । ଡେରି ହୋଇଯାଉଛି । ଆମକୁ ଯାଇ ରାତି ୧୨ଟା ସୁଦ୍ଧା ଭୁବନେଶ୍ୱରରେ ପହଂଚିବାକୁ ହେବ ।”

ଅଳ୍ପ ଢ଼'ଟା କ'ଣ ମୁହଁରେ ଗୁଂଜି ଦେଇ ପାଣି ଗିଲାସେ ପିଇ ସେ ତମତମ ହୋଇ ଗାଡ଼ିରେ ବସିଲେ । ସ୍ୱାର ସପ୍ତାହକ ପରେ ଶୁଣାଗଲା, ତାରଯୋଗେ ବି.ଡି.ଓ. ସୁପ୍ରତି ବାବୁଂକର କଂଧମାଳକୁ ସରେ ସରେ ବଦଳି ଆଦେଶ ଆସିଛି; ଯଦିଚ ତାର ଠିକ୍ ଗୃହପାଂଚ ଦିନପରେ ସମ୍ପୂର୍ଣ୍ଣ ଅଯାଚିତ ଭାବରେ, ସେ ବଦଳି ଆଦେଶ ରଦ୍ଦ ହେଲବୋଲି ଏକ୍ସପ୍ରେସ ତାର ଯୋଗେ ଆଉ ଏକ ହୁକୁମନାମା ଆସି ପହଂଚିଗଲା ।

୧୯୭୧

□□□

## ଦିନ ପରେ ରାତି ନା ଯାହା-ଦିନ-ନୁହେଁ ?

ବିଛଣା ଗୁଡ଼ି ଦେଇଖେ ଟେରକାବଟେ ଦେଖି ଖାଲି ଆଡ଼ି ପରଟାଯାକ ଆଲୁଅ କରି ନିଷିଛ । ସମସ୍ତ ବୋଧହୁଏ ଆଠଟା! ଦେଖ ନା କଣ ' ଦ୍ୱଇଶା ଆଲର୍ମ ଟେବଲ୍ ଷ୍ଟୀ ଉପରେ ରାଗ ହେବା ସ୍ୱାଭାବିକ । କାହିଁକି ବାବୁ, ଦିନେ ଦିନେ କ'ଣ ହଠାତ୍ ଇମିତି ବିଗିଡ଼ି ନ ଗଲେ ଚଲେ ନାଇ ? ରାଗରେ ଉଠି ବିଚାରା ଘଂଟାଟାର ୩୦ ଥର କାନ ମୋଡ଼ି ଦେଇ ସେଦିନ ଲାଗି ଘଡ଼ିରେ ଚାବି ଦେବା କାର୍ଯ୍ୟରୁ ଅବ୍ୟାହତି ନେଲି ।

ହଠାତ୍ କାଲେଂଡରଟିକୁ ଚାହିଁ ଦେଖିଲି, ବଡ଼ ବଡ଼ ନାଲି ଅକ୍ଷରରେ ଲେଖା ହୋଇଛି "ରବିବାର" । ହିଁ, ତ ହେଲେ ତ କଲେଜ ବଂଦ । ନାଃ, ଘଡ଼ିଟାର କମନ୍‌ସେନ୍‌ସ ବୋଲି ଅଲବତ୍ ଗୋଟିଏ ଜିନିଷ ଅଛି କହିବାକୁ ହେବ । ପୁଣି ଲେପଟା ଦେଇ ହୋଇ ବିଛଣା ଉପରେ ଶୋଇପଡ଼ି ଇଆଡ଼କୁ ସିଆଡ଼କୁ ଅନାଇ ହାଇ ମାରିବାକୁ ଲାଗିଲି । କିଂତୁ ନିଦ ଆଉ ଧରାଛୁଆଁ ଦେଲନାହିଁ ।

ତା'ପରେ କାଲି ରାତିରୁ ଆଣି ପଢ଼ିଥିବା ହୁଇଟ୍‌ମ୍ୟାନ୍ ସାହେବଂକର ଖଂଡେ ଗଦ୍ୟ-କବିତାର ବହି ଉପରେ ନଜର ପଡ଼ିଲା । ବହିଟାର ଏପରି ଅଣହେଲା ଅବସ୍ଥା ଦେଖି ଯାହା ଯେ ନ ହେଲା ତା ନୁହେଁ । ସଂଗେ ସଂଗେ ଆମ ନୂଆଗଡ଼ର ଯଦୁମଣିଂକର ଅଂଧ ହାତରେ ଦର୍ପଣ ପଡ଼ିବା ଉପମାଟା ମଧ୍ୟ ମନେହେଲା । ନାଃ, ବହିଟାକୁ ପଢ଼ିବାକୁ ହବ—ଅଂତତଃ ଯଦୁମଣିଂକ ଖାତିରରେ ।

ବ୍ୟଂଗ ବିଦ୍ରୂପକୁ କାହାର ଡର ନ ଥାଏ ?

ବେଶ, ହୁଇଟ୍‌ମ୍ୟାନ୍ ସାହେବ କଣ ଲେଖିଛଂତି ? ଲେଖିଛଂତି ଅନେକ କଥା । ମାର୍କିନ ଦେଶର ନଦୀ, ପର୍ବତ, ମଶା, ମାଛି, କିଛି ବାଦ୍ ଦେଇ ନାହାଂତି । ଖାଦ୍ୟ, ଅଖାଦ୍ୟ ବହୁତ କିସମର କଥା ଲେଖା ହୋଇଛି । ଇସ୍, କବିତାଗୁଡ଼ାକ ପୁଣି ଏଡ଼କ ଟାଣୁଆ ! ଠିକ୍ ଯେପରି ଶୁଖିଲା ନଡ଼ିଆ । ନା ଅଛି ଛଂଦ, ନା ଅଛି ଉପମା – ଯତି, ଯମକକୁ ପଚାରେ କିଏ ? ଶେଷରେ ଅଭିମନ୍ୟୁଂକର "ଟାଣ ଚଣା ଚର୍ବଣ ନାରଦ କଳ୍ପ ପ୍ରାପ୍ତ" ଦଶା ନ ହେଲେ ରକ୍ଷା ! ନାହିଁରେ ବାବା, ଏ ପାହାଡ଼ିଆ ବେପାଖ କବିତା ଆମ ଦେଶ ମଣିଷଂକ ଗରମ ଧାତୁରେ ଚଳିବ ନାହିଁ । ଆମ ଦେଶର ସିଂକାପନ୍ନ ଅଯଥ୍ୟ ଶୀତ ଦିନରେ ମଧ୍ୟ ଥଂଡା ସରବତର ପକ୍ଷପାତୀ !

ଅରେ ବାବା, ଇଏ ପୁଣି କଣ ? ଲେପ ଗୁଡ଼ି ଋଷିମତ ପଦ୍ମାସନ ପକାଇ ପଢ଼ିବାରେ ଲାଗିଗଲି । ଗୋଟାଏ ଜାଗାରେ ହୁଇଟ୍‌ମ୍ୟାନ୍ ଲେଖିଛଂତି—

I was thinking the day most splendid
Till I saw what the
NON-DAY exhibited

ଛ.ଟ୍ୟାଢ ଇନ୍ୟ.ଢ ଇଡ୍ୟ ଢ

ହଁ – ରାତି ନୁହଁ ? Non-Day ? ତେବେ ପୁଣି କ'ଣ ? ସେଦେଖେଁ ଏପାର ଓଡ଼ିଆ ତର୍ଜମା କେତେଦୂର କଣ ଗଡ଼ାଉଛି ? ମନେ ମନେ ସରସ୍ୱତୀ ଠାକୁରାଣୀଙ୍କର ମଂଗଳାଚରଣ କରି ଡାକିଆ ତଳେ ପକାଇଥିବା ଖଂଡେ ପୁରୁଣା ଲଫାଫା ପଛଅଡ଼େ ଅନୁବାଦ ଲେଖିଲି—

"ମୁଁ ଭାବୁଥିଲି ବସି
ଦିନଟି ସତେ କେଡ଼େ ସୁଂଦର !"
ଶେଷରେ 'ନାହିଁ-ଦିନ', ନା, ନା, 'ସା-ଦିନ-ନୁହେଁ', ତାହା ମୋ ଆଗେ ରଖିଲା ତାର ସଂଭାର ।"

କାର୍ତ୍ତିକ ବାବୁ "ରାତ" ଲେଖିଥିଲେ କଣ ଦୋଷ ହୋଇଯାଇଥାଂତା ? ତା ନ ଲେଖି, କଣ ନା Non-Day, ଗ୍ଲୁଡ଼, ସାଦା ଛପା ହୋଇଗଲଣି, ହୋଇଗଲଣି ।

ଦିନ ପରେ ନାହିଁ-ଦିନ ନା ସାନ୍ଧ୍ୟା-ଦିନ-ନୁହେଁ ନା ରାତି ? ଏଇ ହେଲା ସମସ୍ୟା । ଗୋଟାଏ ଆମ୍ଭେ ସ୍କୁଲରେ ପଢ଼ିଥିବା ଭୂଗୋଳ ପୋଥିର ସଂକଳିତ ଲଂଗମ୍ୟାନ ସାହେବ, ଆଉ ଗୋଟାଏ ଆମେରିକାର ମାର୍କିନ ଯୁକ୍ତ-ରାଷ୍ଟ୍ରର ଗଣତାଂତ୍ରିକ କବି ହ୍ୱିଟମ୍ୟାନ୍ ସାହେବ । ଦୁହିଁଙ୍କର ଏ କୁସ୍ତି-ଯୁଦ୍ଧ ଭିତରେ ମୁଁ ପଡ଼ିଲି ମଝିରେ ହରିବଣରେ, ଖୁବ୍ ଏ ଦୁହେଁ ମଝରେ ପେଂଚ ମରାମରି ହୁଅଂତେ କି ମୁଁ ବେଶ୍ ମଜା ଦେଖଂତି, କିନ୍ତୁ ମଜା ଦେଖିବାର ସୌଭାଗ୍ୟ ମୋର ନାହିଁ । ବରଂ ମୋର ଦୁର୍ବଳ ମୁଂଡଟା ଉପରେ ଏମାନେ ନାଚ୍ୟ-କୁଦା କରି ଗଡ଼ାଗଡ଼ି ହେଲେ ।

ମୁଁ ଯାଏଁ କୁଆଡ଼େ ?

ଦିନ ପରେ ରାତି ? ନିଶ୍ଚୟ ରାତି, ହଜାର ବାର ରାତି, ଲଂଗମ୍ୟାନ୍ ସାହେବ କହୁଛଂତି ।
ଦିନ ପରେ ନାହିଁ-ଦିନ ? ନିଶ୍ଚୟ ନାହିଁ-ଦିନ ।

ଏ କଥା Whitman ସାହେବ କହୁଛଂତି ।

କେଉଁଟା ତେବେ ଠିକ୍ ?

ଶେଷରେ ଠିକ୍ କଲି – ନାଇଁ, ଉଭୟେ ଠିକ୍ ।

ଭୂଗୋଳରେ ଦିନ ପରେ ରାତି, କବିତାରେ ଦିନ ପରେ "ନାହିଁ-ଦିନ ।"

ଦିନପରେ ଦିନଟା ତ ଆଉ ଚିରଦିନ ପାଇଁ ମରିଯାଇ ନ ଥାଏ । ତା ହୋଇଥିଲେ ପୁଣି ଭୋର ସାଢ଼େ ପାଂଚଟା ନ ବାଜୁଣୁ ସେ ଅଇଲା କେଉଁଠୁ ? ନା, ନା, ଦିନପରେ ବି ଦିନ ଅଛି । କିଂତୁ ନିର୍ଣ୍ଣୀତ (positive) ଅବସ୍ଥାରେ ନୁହେଁ, ଅନିର୍ଣ୍ଣିତ ବା ଅପ୍ରତ୍ୟକ୍ଷ ଅବସ୍ଥାରେ, ଯେଉଁ ଅବସ୍ଥା ହେଲେ ଆମର ସ୍ଥୂଳ ଚକ୍ଷୁ ଦିନକୁ ଦିନ ବୋଲି ସ୍ୱୀକାର କରେ,

ସେହି ଅନ୍ଧାର ଅଭାବରେ ଦିନର ଆଖି ଦେଖିନଥିଲା ରୂପ ଆମେ ପ୍ରତ୍ୟକ୍ଷ କରିପାରୁ ନା ସତ; କିନ୍ତୁ ସତ୍ତା ତାର ବିଦ୍ୟମାନ ଥାଏ । ରୂପର ଅଭାବ, ସତ୍ତାର ଅଭାବ ଏ ଦୁଇଟା କଥା ଭିତରେ କେତେ ଫରକ୍ ! ଦିନପରେ ମଧ୍ୟ ଦିନ; ସତ୍ୟ—ସବୁବେଳେ ସତ୍ୟ ।

ଏଥିପାଇଁ ରାତିର କଟିକଟିଆ ଅନ୍ଧାର ଭିତରେ ମଧ୍ୟ ସେ ସତ୍ୟ । ସେଥିପାଇଁ ଦିନପରେ ମଧ୍ୟ ଦିନର ଧ୍ୱଂସ ନୁହେଁ । ଜୀବନ ପରେ ମଧ୍ୟ ଜୀବନର ଶେଷ ନୁହେଁ । ମୃତ୍ୟୁ ଭିତରେ ମଧ୍ୟ ଜୀବନ ଥାଏ, କିନ୍ତୁ ଅପ୍ରତ୍ୟକ୍ଷ ଭାବରେ । ଜୀବନକୁ ଆମେ ପ୍ରତ୍ୟକ୍ଷ କରିପାରୁ ବୋଲି ତାକୁ ଜୀବନ ଆଖ୍ୟା ଦେଉ । କିନ୍ତୁ ମୃତ୍ୟୁ ପରେ ତତ୍‌ସଂବନ୍ଧରେ ପ୍ରତ୍ୟକ୍ଷ ଅନୁଭୂତିର ଅଭାବ ହେତୁ ଆମେ ତାକୁ ଜୀବନ କହିପାରୁ ନା, "ମୃତ୍ୟୁ" ବୋଲି ଗୋଟାଏ ନୂଆ ଶବ୍ଦ ସୃଷ୍ଟି କରୁଁ । ଏଠାରେ କେବଳ ପ୍ରତ୍ୟକ୍ଷ, ଅପ୍ରତ୍ୟକ୍ଷର ତାରତମ୍ୟ ଯୋଗୁଁ ନାମର ପ୍ରଭେଦ ମାତ୍ର । କିନ୍ତୁ ବସ୍ତୁ ଏକ, ଯାହା ଜୀବନ ତାହା ମୃତ୍ୟୁ । ମୃତ୍ୟୁ-ଜୀବନର ପରିପୂର୍ଣ୍ଣତମ ପରିଣତି, ତାର ଧ୍ୱଂସ ନୁହେଁ । ଗୋଟାଏ ଆରମ୍ଭର ଶେଷ ମାତ୍ର । କିନ୍ତୁ ସେହି ଶେଷ ଭିତରେ ଅଶେଷ ବର୍ତ୍ତମାନ । ଆମେ ଯାହାକୁ ମୃତ୍ୟୁ କହୁଁ ତାହା ଅପ୍ରତ୍ୟକ୍ଷ ଅତୀନ୍ଦ୍ରିୟ ଜୀବନ ମାତ୍ର ।

ସେହିପରି ରାତି ଆମ ସ୍ଥୂଳ ଇନ୍ଦ୍ରିୟର ଅପ୍ରତ୍ୟକ୍ଷୀଭୂତ ନିତ୍ୟ ଦିବାମାତ୍ର ।

ସେଥିପାଇଁ ମୃତ୍ୟୁକୁ ପ୍ରତି ସେହିଭଳି ତୁଳନା କରି ହୁଇଟମ୍ୟାନ୍ କହୁଛନ୍ତି—

"Known' life became completed by the "Unknown.' The day brings new light to 'Non-day."

ଅର୍ଥାତ 'ଜଣା' ଜୀବନ 'ଅଜଣା'ରେ ପରିପୂର୍ଣ୍ଣ ହେଲ, ଦିନ ନାହିଁ-ଦିନର ଆଲୋକ ଆଣିଦେଲା ।

ଅନ୍ୟତ୍ର—

"I see how life can't exhibit all to me as the day can't. I see that I am to wait for what will be exhibited by death,

(Night on the Prairies.)

ଅର୍ଥାତ ଦିନ ପରି ଜୀବନ ସମୁଦାୟ ଦେଖାଇପାରେ ନା । ମୃତ୍ୟୁ କଣ ଦେଖାଉଛି, ସେଥିପାଇଁ ଅପେକ୍ଷା କରିବାକୁହିଁ ପଡ଼ିବ ।

ଜୀବନର ମୃତ୍ୟୁ ଏକ ଅଂଶ—ଏହାର ଶେଷାଂଶ, ଏକ ନାଟିକାର ଶେଷାଙ୍କ, ଦିନ ପରି ଜୀବନ ମଧ୍ୟ ନିଜ ଭିତରେ ନିଜେ ପରିପୂର୍ଣ୍ଣ ନୁହେଁ । ଦିନର ଅଭାବ ହିଁ ଦିନର ବାକି ଅଂଶଗୁଡ଼ିକ ପୂରଣ କରେ; ଜୀବନର ଅଭାବ ହିଁ ଜୀବନ ସମ୍ବନ୍ଧରେ ଆମର ଅନୁଭୂତି, ଆମର ଧାରଣାର ପୂର୍ଣ୍ଣତ୍ୱ ବିଧାନ କରେ ।

ଦିନର ଅଭାବ ଦିନର ଧ୍ୱଂସ ନୁହେଁ । ଆମର ଶ୍ରେଷ୍ଠ ଆଖି ଯାହାକୁ ଦେଖିପାରେ ନାହିଁ, ଆମର ଶ୍ରେଷ୍ଠ ମନ ଯାହାକୁ ଜାଣିପାରେ ନାହିଁ, ତାକୁହିଁ 'ନାହିଁ, ନାହିଁ' ବୋଲି

ଚିତ୍କାର କରେ, ସେହି ବସ୍ତୁର ଅଜଣା ଅବସ୍ଥାକୁ ଅନ୍ୟ ଗୋଟିଏ ନାଁରେ ଅଭିହିତ କରେ। ଅଭିଧାନରେ ଦରକାର ନ ଥିଲେ ମଧ୍ୟ ଆଉ ଗୋଟାଏ ନୂଆ ଶବ୍ଦ ସେ ଯୋଜନା କରେ। ଫଳରେ ସବୁରେ ଆମ ଅନୁଭୂତିର ସଙ୍କୀର୍ଣ୍ଣତା ମଧ୍ୟ ପ୍ରତିଫଳିତ ହୋଇ ଧରିପଡ଼ିଯାଏ।

ତା ହେଲେ ପ୍ରତ୍ୟେକ ବସ୍ତୁ ଅଛି। ତାକୁ ମାନିବାକୁ ହେବ। ଆମ ଦେଖା ଅଦେଖା, ଜଣା ଅଜଣାର ନିଦ୍ଧାରକୁ ଛୁଇଁଗଲେ ମଧ୍ୟ ତାର ସତ୍ତା ସ୍ୱୀକାର କରିବାକୁ ପଡ଼ିବ। ଧର, ମୋର ଜଣେ ବନ୍ଧୁ ଯଦି ଆଜି ଅଜ୍ଞାତବାସ ଯାପନ କରିବାପାଇଁ କୌଣସି ଦୂର ଦେଶକୁ ଚାଲିଯାଏ, ତାହାହେଲେ ମୁଁ ତାର ଅଭାବ ବୁଝିବି ନାହିଁ। ମୋର ଇନ୍ଦ୍ରିୟ, ମୋର ପ୍ରତ୍ୟକ୍ଷ ଜ୍ଞାନ ତା ନିକଟରେ ପହଞ୍ଚି ପାରିବ ନାହିଁ ସତ; କିନ୍ତୁ ଏହା ବୋଲି, ଭଗବାନ ନ କରନ୍ତୁ, ସେ ବିଲକୁଲ ନାହିଁ ବୋଲି ଯେପରି ମୁଁ ଭୁଲ ନ ବୁଝେ। ଅଭାବ ଆଉ ଧ୍ୱଂସ ଏହି ଦୁଇଟା ଶବ୍ଦ ବରାବର ମନୁଷ୍ୟର ଚିନ୍ତାରାଜ୍ୟରେ ଶାନ୍ତିଭଙ୍ଗ କରି ଆସିଛନ୍ତି।

ମନେ ମନେ ଏହିପରି ମଲ୍ଲିନାଥୀ ଟୀକା କରି ଆତ୍ମବଞ୍ଚନା ଅନୁଭବ କରୁଥିଲି। ଅଧ୍ୟାପକ କହନ୍ତି, ମୁଁ ଛାତ୍ର ହିସାବରେ ବଡ଼ ମୋଟାବୁଦ୍ଧିଆ। କିନ୍ତୁ ଅଧ୍ୟାପକମାନେ ଜାଣନ୍ତି ନାହିଁ ଯେ, ତାଙ୍କର ଜାଣିବାରେ ଯେ ଗୋଳମାଳ ରହିଛି, ତାଙ୍କର ନଜାଣିବାରେ ସେ ଖୋଦ୍ କାରଣର ଅର୍ଥ ତ ସୁସଂହତ, ଏଇ ତ ଜଣା ଅଜଣା ଭିତରେ ପାର୍ଥକ୍ୟ, ଆମେ ଯାହାକୁ ପାଖରୁ ଚାଲିଗଲା ବୋଲି 'ଗଲା, ଗଲା' ବୋଲି ହୁରି ପକାଉ, ମରିଗଲା ବୋଲି କୋବାକ ଛାଡ଼ୁ, ପଣ୍ଡିତମାନେ ସେଠି କହନ୍ତି – 'ନ ଜାୟତେ ମ୍ରିୟତେ ବା କଦାଚନ୍ନାୟଂ' ଇତ୍ୟାଦି ଇତ୍ୟାଦି ଇତ୍ୟାଦି। ଏତେ ବଡ଼ ଜଟିଳ କଥାଟା ଯେ କେଡ଼େ ସରଳ ହୋଇଗଲା, ତାହା ଭାବି ମନକୁ ସତ ଅବାକ୍ ହୋଇଗଲି।

ଭାବନାରେ ପୂର୍ଣ୍ଣଚ୍ଛେଦ ଦେବା ଆଗରୁ ଦୁଆରେ ଡାକପିଅନ ଡାକିଲା-"ବାବୁ, ଚିଠି ହାଏ "

ତରତରରେ ଦୌଡ଼ିଯାଇ ଚିଠିଟା ନେଇ ଆସି ଖୋଲି ଦେଖେ ତ ମୋର ଆଦରର କୁନ୍ତଳା, ମୋର "ନୀଳ ପକ୍ଷୀ" ଦେଶର ସତ୍ତା ସୀପ୍ରା ହାତର ଲେଖା, ଖୁବ୍ ତରତରରେ ସେ ଟ୍ରେନରୁ ଚିଠିଟା ପୋଷ୍ଟ କରିଛି। R.M.S.ର ମୋହର ସମ୍ପନ୍ନ ଚିଠା ପରି ଚିଠିଟାକୁ ଆଧ୍ୟାତ୍ମିକ ମହିମାରେ ଭୂଷିତ କରିଛି। ଚିଠିରେ ଲେଖାଅଛି –

ପ୍ରିୟ– ମୁଁ ଆଜି ଏଠା ଛାଡ଼ି ଚାଲିଯାଉଛି ବର୍ଦ୍ଧମାନ, ହଠାତ୍ ଯିବାକୁ ପଡ଼ିଲା।

ସେଠିକା ଡାକ୍ତରଖାନାରେ ଗୋଟିଏ ନର୍ସ ପୋଷ୍ଟ ଖାଲି ଅଛି। ମୁଁ ଆପ୍ଲାଇ କରିଥିଲି। Appointment ହୋଇଯାଇଛି। ମୁଁ ବୋଧହୁଏ ଆଉ କଟକ ଫେରିବି ନାହିଁ। ତମ ସଙ୍ଗରେ ପୁଣି ଦେଖା ହେବ କି ନାହିଁ କିଏ ଜାଣେ ? ଯଦି ନ ହୁଏ, ତେବେ ତା' ହେଲେ ଶେଷ ଦେଖା। କାଲି ତମ କଟକରୁ ଫେରିଲାବେଳେ କିଏ ଜାଣିଥିଲା ମୋ

କ୍ଷଣିକ ସ୍ୱଦୋଷର ଭସ୍ମଳଗ୍ନ ଉପରେ ଚିରନ୍ତନତାର ଯବନିକା ଘୋଡ଼େଇ ଦେଇ ଆସିବ ବୋଲି ! !

ଆଦରର

ଦୀପ୍ତା

ଚିଠିଟା ବାରଂବାର ପଢ଼ିଲି । ସବୁଠାରୁ କଣେ ବଡ଼ ସାଥୀ ଆଜି ହରାଇଲି—ଇଏ କଣେ ହୁଏତ ସବୁଦିନ ପାଇଁ, ଗଲବେଳେ ଦେଖା ନ ହେଲାନି । ଅନ୍ତଠାରୁ ଦୀପ୍ତା ମୋଠାରୁ ଶହଶ କୋଶ ଦୂରରେ, ଜୀବନ ପାଇଁ ସେ ସେଠାରେ ବାନ୍ଧନୀ । କିଏ ଜାଣେ ଆଉ କେତେ ଦିନ ପରେ ମୁଁ ମଧ୍ୟ ସାତସମୁଦ୍ର ତେରନଦୀ ପାର ହୋଇ ନିଜର ପଥ ଅନ୍ୱେଷଣରେ କୁଆଡ଼େ ବାହାରିବି ?

ଜୀବନର ବିଚିତ୍ର ପରିସ୍ଥିତି ଭିତରେ କିଏ କାହାକୁ ଲୋଡ଼େ ? ଲୋଡ଼ିଲେ ବା କେତେ ଜଣ ପାଆନ୍ତି ? ସୁଯୋଗ ? ସେ ବା କେତେ ଜଣଙ୍କ ଜୀବନରେ ଆସେ ? ଆଜି ଏହି ଦୁର୍ଦ୍ଦିନରେ ଯେଉଁ ବନ୍ଧୁକୁ ହରାଇଲି, କିଏ ଜାଣେ ପୁଣି କେଉଁ ଶୁଭଦିନର ଶୁଭ ଲଗ୍ନରେ ତାକୁ ଫେରିପାଇବି କି ନାହିଁ ।

ଅଜ୍ଞାତସାରରେ ଏବଂ ଅନିଚ୍ଛା ସତ୍ତ୍ୱେ ଆଖି ଦୁଇଟା ଛଳଛଳ ହୋଇଆସିଲା । ମନେ ମନେ ଆଶ୍ୱାସନା ଦେବାକୁ ଲାଗିଲି, ହ୍ୱାଇଟ୍‌ମ୍ୟାନ୍ କହିଛନ୍ତି ଦିନ ପରେ ରାତି ନୁହେଁ—ଦିନର ଅଭାବ ମାତ୍ର । ଯାହା ନାମ ମନୁଷ୍ୟ ଭୁଲରେ ଦେଇଛି, ତାର ଜଣା-ଅଜଣାର କ୍ଷୁଦ୍ର ବୁଦ୍ଧି ଯେପରି ସେ ଏ ଅଭିଧାନକୁ ଦେଇ ଉଦ୍ଭାବନ କରିଛି । କିନ୍ତୁ ଦିନ ଯେ ଅଛି, ସବୁବେଳେ ଅଛି ।

କିଏ କହିବ ଦୀପ୍ତା ନାହିଁ ? ସେ ଅଛି । ଲକ୍ଷ କୋଶ ଦୂରରେ ଥିଲେ ସୁଦ୍ଧା ସେ ଅଛି—ଅଛି—ଅଛି । ମୁଁ ଦୁଃଖ କରିବି କାହିଁକି ? ହେଲେ ବା ମୋର ଇନ୍ଦ୍ରିୟର ଅଗୋଚରରେ, ମୋର ପ୍ରତ୍ୟକ୍ଷ ଜ୍ଞାନର ବାହାରେ, ସେଥିରେ ଯାଏ ଆସେ କେତେ ? ମୁଁ ସ୍ଥୂଳ ଦୃଷ୍ଟିଶକ୍ତିର ସୀମା ଯେପରି ଏତେ ମୂଢ଼ ଦେଖାଇବି କାହିଁକି ଯେ ?

ଏ ଦୁନିଆରେ ସେ ଯେଉଁଠି ଥାଉନା କାହିଁକି, ସେ ଯେ ସତ୍ୟ—ସେ ଯେ ମୋର । ହୁଏତ ମୁଁ ତାକୁ ଦେଖି ପାରିବିନି, କଥା ତାର ଶୁଣି ପାରିବିନି; କିନ୍ତୁ ସେତିକି ତ ସବୁ ନୁହେଁ । ତାର ଉପସ୍ଥିତିର "ବାକୀ ଅଂଶ" ତାର ଅନୁପସ୍ଥିତିହିଁ ପୂରଣ କରିବ । ମୁକ୍ତା ଦୂରକୁ ଚାଲିଯିବା ଦ୍ୱାରା ମୋର ଅନ୍ତରର ନିକଟକୁ ଫେରି ଆସିବ । ( ଦୀପ୍ତା ନାମ ମୁଁ ମୁକ୍ତାକୁ ଦେଇଛି । )

କିନ୍ତୁ ମନଟା ଏଡ଼ିକି ବଗୁଲିଆ ! ଠିକିଏ ହେଲେ ଶୁଣେ୍‌ତା ? ସେ ନିଜ ସେହି ଚିଠିଟାକୁ ବାରଂବାର ପଢ଼ିବା ଲାଗି ଜିଦ୍ କରିବସିଲା । ସେହି ଚିଠି ଖଣ୍ଡିକ ଯେ ମୁକ୍ତାର ଏକମାତ୍ର ଚିହ୍ନ, ଏକମାତ୍ର ଅବଶେଷ, ଯାହାକୁ ଆଖିରେ ପଢ଼ାଯାଇପାରେ, ମନରେ ଅନୁଭବ କରାଯାଇପାରେ ! ଆଖି ଦୁଇଟାରେ ପୁଣି ଏତିକି ଲୁହ ? ମଲି, ମଲି, ଆଷାଢ଼ ମାସରେ କାଳବର୍ଷା ହେଲା ନା କଣ ?

ଯେତେ ବୁଝାଇଲି ଫମର ଫାଟିଗଲା । ହ୍ୱାଇଟମ୍ୟାନ ପହଞ୍ଚିଲେ ଖଟ ଉପରେ, ତା ପରେ ତାଙ୍କର ପ୍ରମୋଶନ ହେଲା ଖଟ ତଳକୁ; ତା ପରେ ଡବଲ ପ୍ରମୋଶନ ପାଇ ସେ ସେହି ଦିନ ମୋର ପୁରୁଣା ବନ୍ଧୁଙ୍କ ମଧ୍ୟକୁ ଚାଲିଗଲେ ।

ମନଟା ମୁହିଁ ମେଉ ଦାଂକ ବସିଲା । ହ୍ୱାଇଟମ୍ୟାନ୍ ଯେତେ ତାଙ୍କ ଭିତରେ ଥାଟି କରି ବୁଝାଇଲେ—"Non-day ଅଛି"; ମୋ କହିଲି, "ଥାଉ, ମୁଁ ମନା କରୁନ; କିନ୍ତୁ ମୁଁ ସେଥିରୁ ପାଇବି କଣ ? ମୁଁ ଯେତେବେଳେ ସେହି Non-dayକୁ ଦେଖି ପାରିବିନି, ତାର ଗରମ ସୂର୍ଯ୍ୟକିରଣରେ ମୋର ଅଂଗ ଦାଉଦାଉ ହେଇପାରିବ ନାହିଁ, ସେତେବେଳେ ସେପରି ଥିବା ନଥିବା ମୋ ପକ୍ଷରେ ସମାନ । ବରଂ ତମ ବହିର ଆଗାମୀ ସଂସ୍କରଣରେ ତାକୁ "ରାତ" କରିଦିଅ । ରାତଠାରୁ ତାହା କେଉଁ ଗୁଣରେ ଅଧିକ କହିଲ ?"

ହ୍ୱାଇଟ୍ମ୍ୟାନ୍ ତାଙ୍କ ଭିତରୁ ଗମ୍ଭୀର ହୋଇ ଜବାବ ଦେଲେ – "ରାତ ଅଦୂରଦର୍ଶୀ ସୀମାବଦ୍ଧ ମନର ପରିଭାଷା ମାତ୍ର ।"

ମନ କହିଲା—"ହେଉ ସେ ପରିଭାଷା, ତାହା ଯେତେବେଳେ ମୋର ଭାବ ପ୍ରକାଶ ପାଇଁ ଯଥେଷ୍ଟ, ମୁଁ ଅନ୍ୟ କଥା ଶୁଣିବି କିଆଁ ? ମଣିଷ ଆଖିକରେ ନିଜ ଗଢ଼ିକରେ, କାହାର ପରାମର୍ଶ ଶୁଣି ନୁହେଁ । ଯାହା ନାହିଁ, ଯାହା ହୁଏତ କେବେ ଆସିପାରେ କି ନାହିଁ ସନ୍ଦେହ, ତାର ବାଟ ଚାହିଁ ବସିବା ଯଦି କାହା କାହା ପକ୍ଷରେ ଅସମ୍ଭବ ହୋଇଉଠିଲା, ତାହାହେଲେ କଣ ଖୁବ ଗୋଟାଏ ଭୁଲ ହୋଇଗଲା ତାର ? ଯାହା ନାହିଁ, ତାକୁ 'ଅଛି' ବୋଲି କହି ମଣିଷ ନିଜକୁ ଭୁଲାଇ ପାରେ ନାହିଁ, ସମସ୍ତେ King Lear ହୋଇନାହାଁନ୍ତି । ନିଜକୁ ପ୍ରତାରଣା କରିବା ଯେତିକି ସହଜ, ସେତିକି କଠିନ ।"

ହ୍ୱାଇଟ୍ମ୍ୟାନ୍ ଅପେକ୍ଷାକୃତ ରୁକ୍ଷସ୍ୱରରେ ଅଭିଯୋଗ କଲେ—"ତାହାହେଲେ ତମେ କଣ ଏହି ସାଧାରଣ ମଣିଷଗୁଡ଼ାକ ଭିତରୁ ଜଣେ ? ସର୍ବସାଧାରଣଙ୍କ ଭାଷା କଣ ତମର ଭାଷା ? ତମର ଟିକିଏ ହେଲେ ବିଶେଷତ୍ୱ ନାହିଁ ? ହାୟ, ହାୟ, ତମେ କଣ ଶେଷରେ ମୋତେ ନିରାଶ କରିବ ? ଉଠ, ମନେରଖ, ତମେ ସାଧାରଣ ମନର ଢେର ଉଚ୍ଚରେ, ମୁକ୍ତାକୁ ତମେ ପ୍ରତ୍ୟକ୍ଷ ଭାବରେ ଜାଣିପାରିବ ନାହିଁ ସିନା; କିନ୍ତୁ ଏହି ଜାଣିବାଟା କେଉଁ ଶ୍ରେଷ୍ଠ, କେଉଁ ଅସଂପୂର୍ଣ୍ଣ କହିଲ ? ତମେ ବିଶ୍ୱାସ କର, ତମ କ୍ଷୁଦ୍ର ଇନ୍ଦ୍ରିୟର ସଂକୀର୍ଣ୍ଣ ସୀମା ବାହାରେ ମଧ୍ୟ ସେ ଅଛି । ସେ ସତ୍ୟ ।

ମନ—"ମୁଁ ସେ କଥା ଶୁଣିବିନାହିଁ । ତୁମେ ମୁକ୍ତାକୁ ଆଣିଦିଅ ।" ହ୍ୱାଇଟ୍ମ୍ୟାନ୍ ରାଗି ଉଠି କହିଲେ—"କଣ ? ମୋତେ ଅପମାନ ? ଆସ୍ପର୍ଦ୍ଧା ତୁମର ! ମୁଁ ଅଭିଶାପ ଦେଉଛି, ତମେ ମୁକ୍ତାକୁ ଯାହା ପାଇଥାନ୍ତ ଆଉ ପାଇବ ନାହିଁ । ଋଷିବାକ୍ୟ ଅନ୍ୟଥା ହୁଏ ନାହିଁ ।

"ସେ ବର୍ଦ୍ଧମାନରେ ଅନ୍ୟ ଜଣଂକର ପ୍ରେମର ପଲ୍ଲବ । ଏହା ମନର ସ୍ୱାଭାବିକ ଗତି । ମନୁଷ୍ୟର ଶରୀର ନିଷ୍ପୃହ ପ୍ରତିଶୋଧ ନେବ । କାରଣ ମେ ସ୍ୱାସ୍ଥ୍ୟ ବୁଝେ, ତାର ସ୍ୱଧର୍ମ ଅଛି, ନିଜସ୍ୱ ପଥ ଅଛି । ମୋର 'Song of the Body' ବା ଶରୀର-ସଂଗୀତ କବିତାଟା ପଢ଼ିଲେ ତମେ ଏହା ବୁଝିପାରିବ ।"

ମନ କହିଲା, "ଆଉ ବନ୍ଧ କରିବାକୁ ପଇସା ନାହିଁ । ଯାହା ହୋଇଛି, ସେଥିପାଇଁ ଅନୁଶୋଚ ହେଉଛି । ଆଚ୍ଛା ଆ-ଅ ।"

ହୁଇଟ୍‌ମ୍ୟାନ (ଟ୍ରଂକ ଭିତରୁ)—"ମୋତେ ଖୋଲିଦିଅ । ବାହାରର ମୁକ୍ତ ପବନ ଓ ଆଲୋକ ଭିତରକୁ ମୋତେ ନେଇଯାଅ । ତତ୍ପରେ ଉଇମାନଂକ ଉପଦ୍ରବରୁ ମୋତେ ରକ୍ଷାକର । ତମେ ମୋର ସମ୍ମାନିତ ଦରଦୀ ପାଠକ, ତମଠୁ କିଣ ମୁଁ ଏତିକି ଆଶା କରି ପାରେ ନା ?"

ମନ - "ପ୍ରତ୍ୟେକ ଜିନିଷର ପ୍ରତିକ୍ରିୟା ଅଛି ବୋଲି ନିଉଟନ୍ କହିଛନ୍ତି । ଅଭିଶାପର ପ୍ରତିକ୍ରିୟା ତମରି ପାଖକୁ ଫେରିଆସିଛି । ତାହା ତମକୁ ଭୋଗ କରିବାକୁ ହେବ । ସେଥିପାଇଁ ପ୍ରସ୍ତୁତ ହୁଅ । ଭଗବାନ ତମକୁ ତାହା ସହିବା ପାଇଁ ବଳ ଦିଅନ୍ତୁ । ହଁ, ଉଇମାନଂକ କଥା ଯାହା କହିଲ, ମୁଁ ଶୀଘ୍ର ଗଂଧକପୂରର ବ୍ୟବସ୍ଥା କରୁଛି । ଟ୍ରଂକ ଭିତରେ ତମର ସୁଖ-ନିଦ୍ରା କାମନା କରେ । ଆଚ୍ଛା, ନମସ୍କାର ।" ☐☐☐

୧୯୩୬

("ଆଧୁନିକ" ପତ୍ରିକାରେ ପ୍ରକାଶିତ)

---

* ଲେଖକ ୧୯୩୫-୩୬ ମସିହାରେ କଲିକତା ସିଟି କଲେଜରେ ଆଇ. ଏ ଶ୍ରେଣୀରେ ଛାତ୍ର ଥିଲେ ।

ବ୍ରହ୍ମପୁର ବସ୍‌ଷ୍ଟାଂଡ୍ ।

ଦୁ' ସମ୍ରୁଦ୍ଧ ବେଗିବେଗି ଗ୍ଲୁଲୁଛଂତି ବସ୍ ଧରିବାକୁ । ଭୁବନେଶ୍ୱର ଯିବେ । ବଡ଼ ସମ୍ରୁଦ୍ଧ ଆଗରୁ ପାଟି କରୁଛଂତି : ବେଇନ ବେଗେନ ଆସ ହେ । ସାନ ଫିଟିଫିନ ହୋ ପଛରୁ ସାନ ସମ୍ରୁଦ୍ଧ ଜବାବ ଦେଉଛଂତି : ଯାଉଚ ତ କସ କରିବ ହେ । ପାଂନ୍ତେଚ (ଚପଲ) ଯୋଡ଼ାକ ଗ୍ଲୁଣ୍ଡି ଆଇଲ ହେ ।

ବସ୍‌ଷ୍ଟାଂଡ୍ ନାନା କୋଲାହଳରେ ଉଚ୍ଛୁଳା ହଉଚ୍ଛି । କଦଳୀ, କାକୁଡ଼ି, ଚନାବାଦାମ, ସର୍ଗିଲଡ୍ଡୁ, ନୂଆ ପାଂଜି ଓ ଭାଗ୍ୟଫଳ ବିକାଳିଂକ ଘନଘନ ଡାକଗ୍ଲ ସାଂଗକୁ ବସ୍ କଂଡକ୍ଟରମାନଂକ କାନଫଟା ଚତ୍କାର :

ଚକଟି

ଚକଟି

ମାଂଡାସା

ମାଂଡାସା

କଟକ

କଟକ ।

ଦୁ' ସମ୍ରୁଦ୍ଧ ରିକ୍‌ସାରୁ ଓଲ୍ହାଇ ରାଜଧାନୀ ବସ୍ ଆଡ଼କୁ ମୁହାଁଇଲେ । ଜଣେ ତେଲେଗୁ କୁଲି ଏବଂ ଆଉ ଜଣେ ଟୋକା ଓଡ଼ିଆ କୁଲି ଦୁଇପଟୁ ଧାଇଁ ଆସି ତାଂକ ସୁଟକେସ୍, ଆଟାଚି ଝିଂକାଝିଂକି କରିବାକୁ ଲାଗିଲେ । ଜଣେ କହୁଚ,ମୁଁ ଆଗ ଆଇଚ । ସାନ କୁଲିଟା ଗୋଟାଏ ଆଟାଚି ଗ୍ଲଡ଼ୁ ନାହିଁ । ବଡ଼ କୁଲିଟା ତା ମୁହଁକୁ ଘୃସିଟାଏ ଝିଂକିଇ କହୁଚ : ଆଂଟରେ ମୁଥଟାଏ ମାରିବ ଯେ ଥୋମଣି ବାହ୍ୟିଟୁ , ହେତୁ ଆଗେ୍ରୁ ରହିବ ନାହିଁ । ଗୁଂଡଆ ଛାକୁ ବୋଲିବ (ଗ୍ଲଡ ଗୁକୁଛାକୁ ହେବ ।)

ଦୁ'ସମ୍ରୁଦ୍ଧ ବସ୍‌ରେ ଯାଇ ବସିଲେ । ବସ୍ ଗ୍ଲଡ଼ିଲା । ଛତ୍ରପୁର ଚଟିର ଛକ ଟପିବା ଉପରେ । ସାନ ସମ୍ରୁଦ୍ଧ କଚ୍ଛ ଭଜା ଚଣା ଓ ଚନାବାଦାମ କିଣି ମଜେ ଖାଉଥାଂତି ଏବଂ ବଡ଼ ସମ୍ରୁଦ୍ଧଂକ ଆଡ଼କୁ ଠୁଂଗାଟା ବଢ଼ାଇ ଦେଉଥାଂତି । ସାନ ସମ୍ରୁଦ୍ଧ କହିଲେ : ଦଶୁଟା ଅଧରେ ପହଂଚ ଯିବାର ଏକା । ଫାଷ୍ଟ ଆଓ୍ୱାରରେ ଆଂଡାର ସେକ୍ରେଟାରୀକୁ ଭେଟିବାର । ମାଛକ ଆଗରୁ ଯାଇ ଜଗିବାର ହେ । ବଡ଼ ସମ୍ରୁଦ୍ଧ ପଗ୍ଲୁରିଲେ, ଆଂଡାର ସେକ୍ରେଟାରୀ କସ ହେ ? ଜବାବ ମିଳିଲା : ଏତକ ଜାଣିନା ସମ୍ରୁଦଏ, ସେକ୍ରେଟାରୀର ସମାନ ତଳ୍ଟା ଏକା ।

ବାଟରେ ସାନ ସମୁଦ୍ର ବୁଝାଉଥାଂନ୍ତି—ଅଂଡାର ସେକ୍ରେଟାରୀଙ୍କୁ ଭେଟି ସାରି ପୁଣି କେତେ ଆଡ଼କୁ ଯିବାର ଅଛି। ଟ୍ରାନ୍‌ସପୋର୍ଟ ଡିପାର୍ଟ, ଉପମଂତ୍ରୀ, ସେକ୍ରେଟାରୀ, ଶେଷକୁ ଯାଇ ମଂତ୍ରୀ। ସମାନ ଫଂଦର ଧକା'ର ଟଂକା ପଳାଇବ ହେ। ଶେଷରେ ଟ୍ରେଜେରୀରେ ଯାଇ ଟଂକା ବାଂଧିବାର। ତେବେ ଯାଇ ପାରମିଟ୍ ନା !!

କଥାଟା ହେଉଚି, ବଡ଼ ସମୁଦ୍ର ବ୍ରହ୍ମପୁରରୁ କଟକ ଖଂଟେ ବାଧ୍ୟ ମକାଇବେ। ସାନସମୁଦ୍ର ପରମିଟ୍‌ଠାରୁ ଆରଂଭ କରି ବାସ୍ ଚଳାଇବା'ର ସବୁ ଦାୟିତ୍ୱ ମୁଂଡାଇଦେଂଥି। ସକାଳ ନଅଟାରେ କି ଅସହ୍ୟ ଗରମ ! ବସ୍ ଭିତରେ ବସି ହେଉନି। ପାସେଂଜରମାନେ ଝାଳଗମରମ ହୋଇଗଲେଣି। ତା'ପରେ ବସ୍ ଉପରେ ଲଦା ହୋଇଛି ମାଛଟୋକେଇ। ତଟକା ସମୁଦ୍ର ମାଛ ! ଟୋକେଇରୁ ପାଣି ନିଗିଡ଼ି ପଡ଼ି ପବନରେ ଛିଟା ଆସି ବାଜୁଚି ଯାତ୍ରୀମାନଂକ ଦେହରେ। ଆଁଇସିଣିଆ ଗଂଧରେ ନାକ ଫାଟି ପଡ଼ୁଚି। ଗୋଟାଏ ପଟ ପ୍ୟାସେଂଜର ମାନେ ଠିଆ ହୋଇପଡ଼ି ପାଟିତୁଂଡ କଲେ। କ୍ଲିନର ବସ୍ ରଖାଇ ଟୋକେଇ ଗୁଡ଼ାକୁ ଭିତର ଆରପଟକୁ ଠେଲି ଦେଉଚି। ପୁଣି ସେପଟ ପ୍ୟାସେଂଜର ହୋ-ହୋ କଲେ ଏପଟକୁ ଠେଲି ଦେଉଚି।

ପ୍ୟାସେଂଜରମାନଂକୁ ଥଂଡା କରିବା ଉଦ୍ଦେଶ୍ୟରେ ଡ୍ରାଇଭର ରେଡିଓ ଲଗାଇ ଦେଇଚି। ରେଡିଓ ପ୍ରୋଗ୍ରାମ ସରିଗଲେ ରେକର୍ଡ଼।

ଚାଲିଚି ଗୀତ :—

‘(ସେ ତ) ପୁରୁଣା ମଡେଲ ଗାଡ଼ି।
ବ୍ରେକ୍ ନାହିଁ ତାର, ହର୍ଣ୍ଣ ନାହିଁ ତାର
ଯାଉଥାଏ ଗଡ଼ଗଡ଼ି।
ହାୟ ମୋ ପୁରୁଣା ମଡେଲ ଗାଡ଼ି !”

ତା'ପରେ ସ୍ୱାମୀ-ସ୍ତ୍ରୀଂକ ଦ୍ୱୈତ କଂଠରେ ମଧୁର ଉପହାର :

“ପୁରୁଣା ଘରଣୀ କିଏ ଚାହାଁ ସରି
ନୂଆଟି ସେ ବଢ଼ି....ବଢ଼ି.... !”

ଓଡ଼ିଆ ଗୀତର ଷ୍ଟାଂଡାର୍ଡ଼ କୁଅଡ଼େ ତଳକୁ ଖସି ଯାଉଚି ବୋଲି ଜଣେ ଦୁ'ଜଣ ଶିକ୍ଷିତ ପ୍ୟାସେଂଜର ଟିପଣୀ କଲେ। ଦୁ'ଜଣ ଓକିଲ ଡ୍ରାଇଭରକୁ ଲାଗି ସାମ୍ନା ସିଟ୍‌ରେ ବସିଥିଲେ। ସେମାନଂକ ଭିତରୁ ଜଣେ କହିଲେ: ଆଉ କ'ଣ ଅଛଂନ୍ତି ଭଂଜେ, କବିସୂର୍ଯ୍ୟ, ଗୋପାଳକୃଷ୍ଣ, ବନମାଳି ? ଏବେ ତ ଲଭରେ-ଲପ'ର ଯୁଗ ଚାଲିଛି। ଏହା ଯେ ଦିନେ ଜାତୀୟ ସଂଗୀତ ହୋଇ ନ ଯିବ କିଏ କହିବ ? ଅର ଜଣକ କହିଲେ : ଆଧୁନିକ ବଂଗଳା ସଂଗୀତର ଷ୍ଟାଂଡାର୍ଡ଼ କିଂତୁ ବହୁତ ଉଚ୍ଚରେ। ଗତ ସାଲେ କଲିକତା ଯାଇଥିଲି। ସେଠି ସବୁ ବଢ଼ିଆ ଗୀତ ଶୁଣି ଆସିଲି ଆଉ କଣ କହିବି !

ଡ୍ରାଇଭର୍ ଏତ ସବୁ କଥାବାର୍ତ୍ତାରୁ ଇଂଗିତ ପାଇ ସେ ଟାଏ ବଂଗଳା ରେକର୍ଡ଼ ଲଗାଇଦେଲା । ଓଡ଼ିଆ, ତେଲେଗୁ, ହିନ୍ଦୀ, ବଂଗଳା ସବୁ ପ୍ରକାର ରେକର୍ଡ଼ ରହିଛି, କିଛି ଅଭାବ ନାହିଁ । ବାଜିଲା ରେକର୍ଡ଼ :—

"ଆମାର ଖୋକାର ମାସୀ
(ସେ ଯେ) ଅମ୍ରିତବାଲ ଦାସୀ ।
ଆମାୟ ଦେଖେ ମୁଚକି ହାସି
ହାସିତେ ଥାକେ ସର୍ବନାଶୀ × × × ×
ଆମି ତାର ଜନ୍ୟେ ସର୍ବୋ ଜେଲେ,
ପରବୋ ଗଲାୟ ଫାଁସି ।"

ଗୀତର ମର୍ମ ସମସ୍ତଙ୍କ ହୃଦୟକୁ ସ୍ପର୍ଶ କରିଲା । ଶ୍ରୋତାମଣ୍ଡଳୀ କିଛିକ୍ଷଣ ପାଇଁ ସ୍ତବ୍ଧ, ଚକିତ । କିଛି ସମୟ ପରେ ଜଣେ କିଏ ପଚାରିଲା : ବାପଧନ ଜେଲ୍ ଯାଇଁକି ଯିବ, ଫାଶିରେ ବା ଲଟକିବ କାହିଁକି କିଏ ? କାହାକୁ ଖୁନ୍ କରିବ କି ? ହୁମ୍ମାଠାରେ ବସିଥିବା ଜଣେ ଯାତ୍ରୀ କହିଲା : ହେଁ, ହେଁ, ଖୁନ୍ କରିବାକୁ ଲୋକ ମିଳୁ ନାହାଁନ୍ତି ? ତା'ପରେ କହିଲା : କାହିଁକି ନିଜର ସ୍ତ୍ରୀ, ଶାଶୁ, ଶଶୁର, ଶଳା ଯିଏ ବାଧା ଦେବ ।

ସେ ଆସି ରାଜଧାନୀରେ ଅଧଘଂଟାଏ ଲେଟ୍‌ରେ ପହଂଚିଲା । ବଡ଼ିଆ ବଡ଼ିଆ କୋଠାବାଡ଼ି । ଚୌଡ଼ା ଚୌଡ଼ା ରାସ୍ତା । ସକାଳ ଦଶଟାରେ ବି ଠାଏ ଠାଏ ସୁବର୍ଣ୍ଣ ଆଲୁଅ ଲିଭି ନାହିଁ । ବିଜୁଳି ବୋର୍ଡର କରାମତି । ଦିନରେ ପଛକେ ହଜାର ହଜାର ବତୀ ନ ଜଳୁଥାଉ ବିଭିନ୍ନ ଗଳିକନ୍ଦିରେ ।

ପାରମିଟ୍ ମିଳିଗଲା । ଏସ.ଏଫ୍. ଠିରୁ ଋଣ ମଧ୍ୟ ମିଳିଗଲା । ଶେଷରେ ବାସ୍ ବି ଆସିଗଲା । ବର୍ତ୍ତମାନ ବଡ଼ ସମୁଦି କ. ନାରାୟଣ ପଟଇ, ଗ୍ରା) ଜେମାଦେଈପେଂଠ ଏବଂ ସାନ ସମୁଦି କେ. ଭି. ରଘୁନାଥ ପାତ୍ର, ଗ୍ରାମ) ଚେଲପଲ୍ଲି, ଉଭୟଙ୍କର ସଲେଖି ପଡ଼ିଲା ବାସ୍‌ର ନାଁ କ'ଣ ଦେବେ ? ସୌଦାମିନୀ, ସୋହାଗିନୀ, ତାରକେଶ୍ୱରୀ, ବନଦୁର୍ଗା ନା ଆଉ କଣ ? ଶେଷରେ ସ୍ଥିରହେଲା ବାସ୍‌ର ନାମ ହୋଇଥିବ "ରଂଗଲତା" । ଯୋଗାଁ ମଧ୍ୟ ବଡ଼ ସମୁଦିଙ୍କ ପ୍ରଥମା ସ୍ତ୍ରୀର ନାମ । ସେ ଏବେ ମରିବାର ଛଅ ବର୍ଷ ହୋଇଗଲାଣି । ଏବଂ ସମୁଦିଏ ଦ୍ୱିତୀୟ ପକ୍ଷ କଲେଣି । ସାନସମୁଦି ରହିଲେ ବାସ୍‌ର ପୂରା ତତ୍ତ୍ୱାବଧାରକ ରୂପେ । ସବୁ ହାନିଲାଭ ତାଂକରି ମୁଂଡରେ ।

ବାସ୍ ଚଳିବାର ପ୍ରାୟ ଦୁ'ବର୍ଷ ହେଲାଣି । ଟିକଟ କଟା ହେଉଛି, ମାଲପତ୍ର ବୁହା ହେଉଛି । ମାତ୍ର ପଇସା ବେଶୀ ଆସୁନାହିଁ । ବେଳେବେଳେ ଡ୍ରାଇଭର୍ କ୍ଲିନର୍‌ଙ୍କ ଦରମା ପାଇଁ ବି ଟଂକା ଅଂଟୁ ନାହିଁ । ଋଣର ସୁଧ ତ ବଢ଼ି ବଢ଼ି ଚାଲିଛି

ଶେଷରେ ବଡ଼ ସମୁଦ୍ରଏ ଜଗିଲେ । ସେ ଅନ୍ୟ ବସ୍‌ରେ ଯାଇ ଗଂଜା, ହୁମା, ଜଂବା ଗଂଜଠାରେ ଛକଥିବେ । ହଠାତ୍ ଗଂଗଲତାରେ ଉଠିପଡ଼ି ଟିକଟପତ୍ର, ଯାତ୍ରୀ ଇତ୍ୟାଦି ଯାଂଚ କରିବେ । ବହୁତ ଫାଂକ ଧରାପଡ଼ିଲା । କେତେ ଥର ବସ୍‌ରେ ସାନସମୁଦ୍ରଂକ ସଙ୍ଗେ ମୁହାଁମୁହିଁ ବ ହୋଇଗଲଣି । ସାନସମୁଦ କ'ଣ ଛାଡ଼ିବା ଲୋକ ? ସେ ଓ ମୁହେଁ ମୁହେଁ ନାଡ଼େଇ ଦେଲେଣି : ଏଣିକି ତମ୍ କଥା ତମେ ବୁଝିଥିବ । ମୋର ଏତେ ବାଂଚିକି ଯାଏ କିଏ ? ମୁଁ ଗ୍ଲକଲି ହେ ।

ଦିନେ ଝଲ୍କି କୋଟ ଯାଟ ରାସ୍ତାରେ ଦ'ସମୁଦ୍ରଂକ ଭିତରେ କଚଯା ହୋଇଗଲ । ବଡ଼ ସମୁଦି ବାଟରେ ବସ୍‌ରେ ଉଠି ଦେଖଂଥିଲେ ବହୁ ଯାତ୍ରୀ ମାଳପତ୍ର ଧରି ଓହ୍ଲାଇଗଲେ । ମାତ୍ରକ ଟିକଟ କଟା ହୋଇଛୁ ମାତ୍ର ଅଳ୍ପ କେତୋଟା । ସେ ରାଗରେ ଗରଗର ହୋଇ ପଗ୍ଭରିଲେ : ଟଂକା କିଏ ଦେଲ ଦେ ? ସାନ ସମୁଦି କହିଲେ, ତମର ଯେବେ ଏତେ ଅବିଶ୍ୱାସ ତେବେ ତମର ଆମର ସବୁ ପାଇଟି ଆଜିଠୁ ଛାଡ଼ି ଗଲ ହେ । ଆଉ ଜୀବନରେ ତମ ମୁହଁ ନ ଗ୍ଭହିଁବାର ହେ ।

ସେଇ ଦିନଠୁ ଦ' ସମୁଦ୍ରଂକ ଭିତରେ ପ୍ରାୟ ଦେଖା ସାକ୍ଷାତ୍ ହୁଏ ନାହିଁ । କିଛି ଦିନ ଗଲା ଉତ୍ତାରୁ ସାନ ସମୁଦ ନଜର ଖଂଡେ ବାସ୍ ପକାଇଲେ । ତାଂକୁ ତ ସବୁ ଇ ମ ଆଗରୁ ମାଲୁମ ଥିଲା । କିଛି ଅସୁବିଧା ହେଲ ନାହିଁ । ବସ୍ ରେ "ଫାରେନ ରେଡ଼ିଓ" ଖଂଜିଲେ । ବଡ଼ିଆ ବଡ଼ିଆ ସିନେମା ଷ୍ଟାରଂକ ଛବି ବଂଧେଇ କରି ଲଗାଇଲେ । ଦାମୀ ଦାମୀ ରେକ୍‌ସିନ କନାରେ ଗଦୀ ବନାଇ ପକାଇଲେ । ବାସ୍‌ର ନାମ ରଖିଲେ **'ସୁପର୍ ରଂଗଲତା ।"**

ବ୍ରହ୍ମପୁରରୁ କଟକ ଏବଂ କଟକରୁ ବ୍ରହ୍ମପୁର ରାସ୍ତାରେ ଦୁଇ ସମୁଦ୍ରଂକର ଦୁଇ ରଂଗଲତା ପଛ୍ଲିବା ମାରି ଆଟରେ ଯାଉଥିବାବେଳେ ଦେଖଣାହାରିଂକ ଆଖି ଖୋସି ହୋଇଯାଏ । ଲୋକମାନେ ହାଟ ବଜାର ଘୋଡ଼ା ରାସ୍ତା କଡ଼ରେ ଛିଡ଼ାହୋଇ ଦୁଇ ବସ୍‌ର ଦୋଡ଼ ଦୌଡ଼ ଖେଳ ଲକ୍ଷ୍ୟ କରଂତି ।

କିଏ କାହାକୁ ଟପି ଆଗକୁ ମାଡ଼ିଯିବ ଏବଂ ପଛ ବସ୍‌ର କଣ୍ଡକ୍ଟର ଟୋକା ହାତ ବଢ଼ାଇ 'ଖୋକାଟା' ପାଟିକରି ଗ୍ଭଲିଯିବ, ସେ ତ କ ଗୋଟାଏ ଘଣ୍ଟା ଆଉ ଗୋଟାଏ ଘଣ୍ଟାକ କାଟିଦେଲେ ବଜେଡା ପିଲଟି ଚତ୍କାର କରିଉଠେ । ଏହା ଦେଖେଣାହାରିଂକ ମନରେ ବେଶ୍ କୌତୁହଳ ସୃଷ୍ଟିକରେ ।

ସାନସମୁଦ ବସ୍ ପକାଇବା ଦିନୁ ବଡ଼ ସମୁଦ୍ରଂକ ସଙ୍ଗେ ଯାହା ଟିକିଏ ବା କ୍ଷୀଣ ସମ୍ପର୍କ ଥିଲା, ତାହା ମଧ୍ୟ ତୁଟି ଗଲଣି । ଏବେ ବ୍ରହ୍ମପୁର କ ଛତ୍ରପୁର ରାସ୍ତାରେ ଉଭୟେ ଉଭୟଂକୁ ଦେଖିଲେ ମୁଂହରେ ଗାମୁଛାଟା ତାଂକଦେଇ ବାଟକଟାଇ ଗ୍ଭଲଂତି ।

ଦୁଇ ବସ୍ ପ୍ରାୟ ଦଶ ପଂଦର ମିନଟ୍ ଫାରକରେ ବସ୍‌ଷ୍ଟାଂଡ଼ରୁ ଛାଡ଼େ । ବାଟରେ ଦୁଇ ବସ୍ ଭେଟିଗଲେ ଏକ ଆରେକକୁ ଟପିଯିବାକୁ ଚେଷ୍ଟା କରେ । ଦୁଇ ବସ୍ ମଧ୍ୟରେ ଲାଗିଯାଏ ବାଦାବାଦି । କେଉଁ ବସ୍ ଯଦି ବାଟରେ ଯାତ୍ରୀ କିଂବା ମାଲପତ୍ରର ଉତାରିବାରେ ଡେରି କରିଦିଏ କିଂବା ହ୍ୱିଲଟ୍ ନଥିଲେ ମଧ୍ୟ ଯାତ୍ରୀ ଉଠାଇବାରେ ଲାଗିଯାଏ, ତେବେ ଆର ବସ୍‌ଟା ତା' ପାଖ କଟାଇ ଛାଇ ମାରିଦେଇ ଆଗକୁ ବଢ଼ିଯାଏ । ତା'ପରେ ପଛରେ ପଡ଼ିଥିବା ବସ୍‌ଟା ଆଉ ତାର ପଛ ପାଏ ନାହିଁ ।

ସବୁଦିନ ପରି ସେଦିନ ମଧ୍ୟ ଦୁଇ ରଂଗଲତା ମଖାଳୁ କଟକ ବସ୍‌ଷ୍ଟାଂଡ୍ ଛାଡ଼ିଲେ । ସୁପର୍ ରଂଗଲତାରେ କେତେକ ପୁରୀଯାତ୍ରୀ ଉଠିଥାଂତି । ସେମାନେ ଭୁବନେଶ୍ୱରଠାରେ ଓହ୍ଲାଇ ପୁରୀ ବସ୍ ଧରିବେ । ଆଉ ଉଠିଥାଂତି କେତେ ଜଣ ଅଧ୍ୟାପକ, କଲେଜ ଛାତ୍ର, ନଚଦନିଆ ଡେଲି ପ୍ୟାସେଂଜର ଦାଇସ୍ କୁ ର କେତେଜଣ ଶିକ୍ଷୟିତ୍ରୀ (ଯେଉଁମାନେ କ ଅନା ବାଟ ଯାଇ ନିଜ ନିଜ ସ୍ଥାନରେ ଓହ୍ଲାଇ ଯିବେ) ଏବଂ ଏକ ଅପେରା ପାର୍ଟିର ବାବୁରିବାଲ ରଖିଥିବା କେତେକ ଲୋକ ।

ପୁରୀ ଯାତ୍ରୀ ଦୁଇଜଣ ନିଜ ନିଜ ଭିତରେ ଗପ ଲଗାଇ ଦେଇଥାଂତି । ଜଣେ କହୁଛି : ବୁଝିଲେ ନା ଆଜ୍ଞା : ଶ୍ରୀକ୍ଷେତ୍ରରେ ମୌନାବତାର ବିରାଜୁଛଂତି । ତାଂକ ମହିମା ମଣିଷକୁ କ'ଣ ବା ଗୋଚର । ବ୍ରହ୍ମା, ଇଂଦ୍ର, ବରୁଣ, ନାରଦ, ସନକ ତ ଯୁଗ ଯୁଗ ତପସ୍ୟା କରି କିଛି କୂଳ କିନାରା ପାଇଲେ ନାହିଁ ।

ଅନ୍ୟ ଜଣକ କହିଲେ : ମୌନାବତାର କଅ ହେ ? ଶାସ୍ତ୍ର ପୁରାଣରେ ତ ସେ କଥା ନାହିଁ । ମତ୍ସ୍ୟ, କଚ୍ଛ୍ୟ, ବରାହ....। ପ୍ରଥମ ଜଣକ କହିଲେ, ନାହିଁ ହେ ଅଛି ମୌନାବତାର । ଯେତେବେଳେ କଳିଯୁଗ ପଡ଼ିଲା, ସେତେବେଳେ ଭଗବାନ କଳିକି ଡାକି କହିଲେ—ଯା, ତୁ ପଡ଼ । କଳି ହାତଯୋଡ଼ି କହିଲା—ମହାପ୍ରଭୁ, ମୁଁ ପଡ଼ିବ ନାହିଁ ଆପଣ ଯାହା କରିବାର କରଂତୁ ।

ଭଗବାନ ମହା ସମସ୍ୟାରେ ପଡ଼ିଲେ । ଦ୍ୱାପର ପରେ ଯଦି କଳି ନ ପଡ଼େ ତେବେ ସୃଷ୍ଟି ନାଶ ହେବ । ଭଗବାନ କଳିକି ପ୍ରବୋଧ ଦେଇ ତା' ପିଠି ଆପୁଡ଼ାଇ କହିଲେ, କାହିଁକି ପଡ଼ିବୁ ନାହିଁ ? ସୃଷ୍ଟି ଚଳିବ କିପରି ? କଳି କହିଲା, ମୁଁ ପଡ଼ିଲେ ଯାହା ଯାହା ହେବ ତା ତ ଆପଣ ଜାଣଂତି । ଘରଅଡ଼େ ଘୋର ଭ୍ରଷ୍ଟାଚାର ଘୋଟିଯିବ। ପୁଅ ବାପକୁ ମାନିବ ନାହିଁ । ଶିଷ୍ୟ ଗୁରୁଂକୁ ବାଡ଼େଇବେ । ବୋହୂ ଶାଶୁକୁ ମାରିବ। ଘିଅରେ ଗୋରୁଚର୍ବି ଏବଂ ଖାଇବା ତେଲରେ ପେଡ଼ା ମୋବିଲ ମିଶାଇ ବିକିଲେ ଦୋକାନୀଏ ଭେଜାଲ ଜିନିଷକୁ ଖାଂଟି ବୋଲି ଚଲାଇବେ । ଲାଂଚମିଛରେ ପୃଥି ଭରିଯିବ । ମଂତ୍ରୀ, ଏମ. ଏଲ. ଏ. ସମସ୍ତେ କଳାପୋଚେଇ କରିବେ । କଳାଧନରେ

ଦେଶ ଭଣଯିବ । ବନ୍ଦାପେଲାଂକର କଦର ବଢ଼ିବ । ଧନ ଦ'ପଦ୍ମରେ ଖ୍ୟାତି, ଲୁଟ୍‌ଜାଉନ ନାଗାର୍ଜୁନ ହେବ । ଆପଣ ତ ଏସବୁ କିଛି ସହି ପାରିବେ ନାହିଁ । ଝିକକ କଥରେ ଦୌଡ଼ିଆସି ମୋତେ ଆକ୍ରମଣ କରିବେ, ମାରଧର୍ କରିବେ । ମୁଁ ଏତେ ଅତ୍ୟାଚାର ସହିବି ନାହିଁ ।

ଭଗବାନ ବିଷ୍ଣୁ ବାଧାଦେଇ କହିଲେ . ଆହ୍ୱ, ଆଉ । ମୁଁ ସବୁ ଜାଣେ । ଏ ସବୁ ହେବ । କିନ୍ତୁ ସ୍ୱାଣ ଭିତରେ ଆଂଭର ମହିମା ପ୍ରକଟ ହେବ । ତେତେ ଅଳାବନ୍ଧ ପଢ଼ିବାକୁ ହେବ । ମୁଁ ତତେ କଥା ଦେଉଛି. ମୁଁ ତୋର କୌଣସି କଥାରେ ପାଟି ଫିଟାଇବି ନାହିଁ । ମୁଁ ମୌନାବତାର ହୋଇ ବସିବ । ସେହିଦିନୁ ଭଗବାନ ମୌନାବତାର ହୋଇ ଶାଂଖ କଟକରେ ବିରାଜମାନ କରୁଛନ୍ତି ।...

ଏଣେ ଦୁ'ଜଣ ବିଜ୍ଞାନର ଅଧ୍ୟାପକ ନିଜ ନିଜ ଭିତରେ ତର୍କ ଲଗାଇ ଦେଇଛନ୍ତି । ସେମାନଂକର ଆଲୋଚନା ପ୍ରାୟ ଚରମକୁ ଉଠିଲାଣି । ସେମାନଂକର ଆଲୋଚ୍ୟ ବିଷୟ ହେଉଛି—ଗତିତତ୍ତ୍ୱ । ଆଲୋକର ଗତି ସମସ୍ତଙ୍କୁ ଡେଇଁ ଚାଲିଯିବ । କୌଣସି ବସ୍ତୁ ଆଲୋକର ଗତି ପ୍ରାପ୍ତ ହେଲେ ସମସ୍ତ ଆଉ କାମ କରିବ ନାହିଁ ।

ଠିକ୍ ଏହିକିବେଳେ ଦେଖାଗଲା, ରଂଗଲତା ପଛରୁ ହର୍ଣ୍ଣ ମାରି ଖୁବ୍ ଜୋରରେ ଆଗକୁ ମାଡ଼ି ଆସୁଛି । ରାସ୍ତା ଦେବା ପାଇଁ ସଙ୍କେତ କରୁଛି । ଯୋଗକୁ ସେଦିନ ଯାନ ସମୁଦ୍ର ନିକଟ ବସ୍‌ରେ ଥାଆନ୍ତି. ଡ୍ରାଇଭର ପାଖକୁ ଲାଗି ବସିଥାନ୍ତି । ସେ ଡ୍ରାଇଭରକୁ ହୁକୁମ ଦେଲେ : ଧାଇଁ ପଳା ହେ । ରାସ୍ତା ଦେବା ନାହିଁ । ପଛ ବସ୍‌ରେ ବଡ଼ ସମୁଦ୍ର ଥାଆନ୍ତି । ସେ ହୁକୁମ ଦେଲେ ସେ କୌଣସି ମତେ ଆଗ ଗାଡ଼ିକି ଟପିଯିବାକୁ ହେବ । ଉଭୟ ବସ୍ ପ୍ରାଣମୂର୍ଚ୍ଛା ବେଗରେ ଛୁଟି ଚାଲିଥାନ୍ତି ।

କେତେବେଳେ ରଂଗଲତା ଆଗ ବସ୍‌ର କଡ଼କୁ ମାଡ଼ିଯାଇ ବାଟକାଟି ପଳାଇବାକୁ ଚେଷ୍ଟା କରୁଚ ତ, ସୁପର୍ ରଂଗଲତା ବାଟଆଗୁଳି ଆଗକୁ ଧାଇଁ ଯାଉଚ । କେହି କାହାକୁ ବାଟ ଛାଡ଼ୁ ନାହାଂନ୍ତି ।

ଅଧ୍ୟାପକଂକ ଭିତରେ ତର୍କ ସରଗରମ ହେଲାଣି । ଜଣେ କହୁଛନ୍ତି; ଚାଳିଶ ବର୍ଷ ପୂର୍ବେ ଆମ ଗତିବେଗ ଥିଲା ଶଗଡ଼ଗାଡ଼ିରେ ଘଂଟାକୁ ୩ ମାଇଲ ବା ଅଶ୍ୱପୃଷ୍ଠରେ ଘଂଟାକୁ ୨୦ ମାଇଲ । ବର୍ତ୍ତମାନ ଆମେ ପ୍ରାୟ ଶହର ଗତିବେଗ ହାସଲ କରି ସାରିଲୁଣି ରକେଟ ଯାନରେ । ମଣିଷର ଲକ୍ଷ୍ୟ ଆଲୋକର ଗତିବେଗ ହାସଲ କରିବା । ଯେତେବେଳେ ସେ ସମସ୍ତଙ୍କୁ ଜୟ କରି ପାରିବ । ଚଂଦ୍ର ପୃଷ୍ଠରୁ ଆଲୋକ ଆସି ଆମ ପାଖରେ ପହଂଚିବାକୁ ଏକ ସେକେଂଡରୁ ସାମାନ୍ୟ ବେଶୀ ସମୟ ଲାଗେ । ମଣିଷ ଯଦି ମହାକାଶରେ ଡିନୋଟି ଆଲୋକ ବର୍ଷ କଟାଇ ଆସିବ, ଦେଖିବ ଏଠି ଆମ ପୃଥିବୀରେ ୩୦୦ ବର୍ଷ ବିତିଯାଇଚ । କି ବିଚିତ୍ର ସତେ ଏଇ ଗତି !

ରଂଗଲତା ମାଡ଼ି ଆସୁଛି । ଏଇ ପାଖ କାଟି ଚାଲିଯିବ ପରା । କିଂତୁ ସୁପର୍ ରଂଗଲତା ଆହୁରି ଜୋରରେ ଧାଇଁଚି । ଡାହାଣ ପାଖରେ ମେଟାଲ ଓ ମୋରମ ସ୍ତୂପ । ରାସ୍ତା କାଟି ଆଗକୁ ପଳାଇବାର ଭୟ ନାହିଁ । ଯାନ ସମୂହ ଆଂଦୋଳ ପଡ଼ି କହୁଛଂତି : ଚାଲ, ଆହୁରି ଜୋରରେ ଚାଲ । ଧାଇଁ ପଳା । ଦେଖିବା କିଏ ଆଗକୁ ଚାଲିଯିବ । ବଡ଼ ସମୁଦ୍ର ପଛରେ ରଂଗଲତା ଡ୍ରାଇଭରକୁ କହୁଛଂତି ; ଚାଲ ହେ, ଆହୁରି ଜୋରରେ ଚାଲ ହେ । ଯାହା ହେବ ମୁଁ ଅଛି. ମୁଁ ବୁଝିବି ହେ । ଦୁଇ ଡ୍ରାଇଭର ଷ୍ଟିଅରିଂ ଉପରେ ଝୁଂକିପଡ଼ି ଝାଳନାଳ ହୋଇ ଗାଡ଼ି ଚଲାଉଛଂତି । ପ୍ୟାସେଂଜରମାନେ ମଧ୍ୟ ନିଜ ନିଜ ସିଟ୍‌ରୁ ଉଠିପଡ଼ି "ଚାଲ ଚାଲ" ପାଟି କରୁଛଂତି । କେହି ଚାହାଂତି ନାଇଁ ଯେ ପଛ ବସ୍‌ଟା ତାଂକ ବସ୍‌କୁ ଟପିଯାଉ । ପଛ ବସ୍‌ର ଆରୋହୀମାନେ ମଧ୍ୟ ସେଇପରି ପାଟି କରୁଛଂତି, ଚାଲ, ଚାଲ ଆହୁରି ଜୋରରେ ଚାଲ । ଆଗ ବସ୍‌କୁ କୌଣସି ମତେ ଟପିଯାଇ ବାଜିମାତ୍ କରିବାକୁ ହେବ । ଗୋଟାଏ ଅଦ୍ଭୁତ ନିଶା ସମସ୍ତଂକୁ ଘାରିଛି । ସମସ୍ତେ ଯେପରି ମତୁଆଲା । ଦୁଇ ବସ୍‌ର ଯାତ୍ରୀଂକ ମୁହଁରେ କେବଳ ଶୁଣାଯାଉଛି—ଚାଲ,—ଚାଲ —ଆହୁରି ଜୋର୍‌ରେ ଚାଲ । କେହି ଚାହାଂତି ନାଇଁ ହାରିଯିବାକୁ । ଏ ବିଜୟ ଯେପରି ସମସ୍ତଂକର ବିଜୟ ।

ଅଧ୍ୟାପକ ଦୁହେଁ ଏତେବେଳ ଯାଏ ନିଜ ନିଜ ସିଟ୍‌ରେ ବସି ଏ ଦୃଶ୍ୟ ଉପଭୋଗ କରୁଥିଲେ । ବର୍ତ୍ତମାନ ସେମାନେ ଉଠିପଡ଼ି ରୁମାଲ ହଲାଇ, ସମସ୍ତଂକ ସାଙ୍ଗେ ସ୍ୱର ମିଳାଇ ଡ୍ରାଇଭରକୁ ଉତ୍ସାହିତ କରୁଛଂତି ।

ରାସ୍ତା କଡ଼ରେ ଯାନ ବାହନର ଗତି ନିୟଂତ୍ରଣ କରିବା ପାଇଁ ପୋତା ଯାଇଥିବା ସତର୍କ-ଖୁଂଟି ଗୁଡ଼ାକ ଗୋଟିକ ପରେ ଗୋଟିଏ ତୀର ବେଗରେ ପଛକୁ ଛୁଟି ଚାଲିଛଂତି ।

**"The minute you save by Speeding may be your last."**

**"Speed is thrilling, but Killing."**

ମାତ୍ର କାହାର ସେଥିପ୍ରତି ନଜର ନାହିଁ । ଦାଂଡିମାଳ ଲୁଣ ଶଗଡ଼ ଆସୁଚି । ଟିକିଏ ଗିଅର୍ ବଦଳାଇ ପୁଣି ପୂର୍ବ ଗିଅରକୁ ଫେରିଯିବା ପାଇଁ ବ୍ୟାକୁଳତା । ଏକ୍‌ସିଲେଟର ଉପରୁ ପାଦ ହୁଗୁଳା ହେବାକୁ ଚାହେଁ ନାହିଁ ।

ଆଗରେ ଋଷିକୁଲ୍ୟା ପୋଲ । ଏଇଠି ପାଖ କଟାଇ ନପାରିଲେ ଆଉ ଯାଇ ହେବ ନାହିଁ । ରଂଗଲତା ପୂର୍ଣମାତ୍ରାରେ ଡ଼ହକୁ ମାଡ଼ିଗଲା । ସୁପର୍ ରଂଗଲତା ବାଟ ଆଗୋଳିବାକୁ ଯାଇ ତା' ଦେହରେ ଖୁବ୍ ଜୋରରେ ବାଡ଼େଇ ହୋଇଗଲା । ଗୋଟାଏ ପ୍ରଚଂଡ ଶବ୍ଦ ହେଲା । ଆଖପାଖ ଲୋକେ ଚମକି ପଡ଼ିଲେ ।

ଆଗରେ ଗୋଟାଏ ଗଛ ।

ତା'ପରେ ସବୁ ଶେଷ ।

ତା'ପରଦିନ ଖବର କାଗଜରେ ବାହାରିଲା : ରୁସିକୁଲ୍ୟା ପୋଲ ନିକଟରେ ଦୁଇଟା ଯାତ୍ରୀବାହୀ ବସ୍ ମଧ୍ୟରେ ପ୍ରଚଂଡ ସଂଘର୍ଷ ହେବା ଫଳରେ ବସ୍ ଦୁଇଟା ଓଲଟି ପଡ଼ି ଭାଂଗି ଚୁରମାର ହୋଇ ଯାଇଛି । ଘଟଣା ସ୍ଥଳରେ ଦୁଇ ବସ୍‌ର ମାଲିକ, ଡ୍ରାଇଭର ଓ କ୍ଲିନର ଏବଂ ପ୍ରାୟ ଦଶ ଜଣ ଯାତ୍ରୀ ନିହତ ହୋଇଛଂତି ଏବଂ ବହୁଯାତ୍ରୀ ଗୁରୁତରଭାବେ ଆହତହୋଇଛଂତି । ଆହତ ବ୍ୟକ୍ତିମାନଂକୁ ଚିକିତ୍ସା ପାଇଁ ବ୍ରହ୍ମପୁର, ମେଡିକାଲ କଲେଜ ହାସ୍‌ପାତାଲରେ ଭର୍ତ୍ତି କରାଯାଇଛି । ଆହତ ବ୍ୟକ୍ତିମାନଂକ ମଧ୍ୟରେ ଦୁଇଜଣ ଅଧ୍ୟାପକ ଅଛଂତି ବୋଲି ଜଣାଯାଇଛି । ସେମାନଂକ ଅବସ୍ଥା ସଂକଟାପନ୍ନ ବୋଲି ସଂବାଦରୁ ପ୍ରକାଶ । □□□

କଟକ-୧

୮ । ୯ । ୧୯୮୩

# ଜଂଗଲ

ଏ ଜଂଗଲର କୌଣସି ଖାସ୍ ନାମ ନାହିଁ । ପୂର୍ବ ଅଂଚଳଟାକୁ ହିଁ କରମଳ ବୋଲି କୁହାଯାଏ । ତଥାପି ସ୍ଥାନୀୟ ଲୋକେ ପାଖ ଅଂଶଟାକୁ ବେଟରଣା ନଈ ବୋଲି କହନ୍ତି । ନଟବର ଫରେଷ୍ଟ ଗାର୍ଡ ହୋଇ ଏଠିକି ଆସିଛି । ମାତ୍ର ଦୁଇଟା ବର୍ଷରେ ସେ ଏଠି ବେଶ୍ ଆସ୍ଥାନ ଜମାଇ ନେଲାଣି । ଜଂଗଲ ଠିକାଦାରମାନଙ୍କ ସଙ୍ଗେ ତାର ସଟଲ । ସେମାନେ କୋଚିଲା ଫଳର ଠିକା ନେଇ ବଡ଼ ବଡ଼ ଶାଳ ପିଆଶାଳ କାଟି ଟ୍ରକରେ ବୋଝେଇ ଚାଲି ଯାଉଛନ୍ତି । ଶୁଣାଯାଏ ନଟିଆ କୁଆଡ଼େ ମୋଟା ଅଂଟାଖୋସା ନେଇ ସେମାନଙ୍କୁ ଗ୍ରୀନ୍‌ଦିଏ, ଜାଲ ଚାଲାନ୍ ଦେଇଦିଏ । ଏକଥା ରେଂଜର ବାବୁଙ୍କୁ ବହୁତ ଥର କୁହା ଗଲାଣି । ବହୁତ ରିପୋର୍ଟ ମଧ୍ୟ ଉପରକୁ ଗଲାଣି । ମାତ୍ର କିଛି ହେବାକୁ ନାହିଁ । ଲୋକେ କହନ୍ତି ନଟିଆ ଉପରବାଲାଙ୍କୁ ହାତରେ ରଖିଛି । ଜଂଗଲ ଜଂଗଲ ଉଜାଡ଼ି ପଦା ହୋଇଯାଉଛି । କିନ୍ତୁ ତାର କେହି ବୁମ ବଂକା କରି ପାରିବେ ନାହିଁ । ନଟିଆ ରୂପାସ ଗାଁରେ ଗୁହାଦୋକାନ ସାମନା ବେଂଚରେ ବସି ଗୁହା ଖାଉ ଖାଉ ନିଶରେ ହାତମାରି କହେ, ଦେଖିବା ଭଲ କେଉଁ ଶଳା ମୋର କ'ଣ କରିବ ? ଏଇ ଠେଂଗାରେ ମୁଂଡ ଛେଚି କରିଦେବ ।

ସେ ଗାଁର ଡାକ ପିଅନ ଭ୍ରମର ଉପରେ ନଟିଆର ସବୁଠୁ ବେଶି ରାଗ । ଧନେ ଧନେ କହେ ତାକୁ ପିଟି ମାରିଦେବ ଏବଂ ଲାସ୍‌ଟାକୁ ନେଇ ଜଂଗଲରେ ଫୋପାଡ଼ି ଦେଇ ଆସିବ । କିଏ ପତ୍ତା ପାଇବ ? ଥାନାର ଜମାଦାର ବାବୁଙ୍କ ସଙ୍ଗେ ଜଣାଶୁଣା ଅଛି ତାର । ଥାନାବାବୁ ବି ତାକୁ ଥରେ ଦି'ଥର ଡକାଇ କାଠଚୋରି ବିଷୟରେ ପଚାରିଲେଣି । ମାତ୍ର ନଟର କୈଫିୟତରେ ସେ ସଂତୁଷ୍ଟ ବୋଲି ନଟର ଗୋଟାଏ ଧାରଣା

ଭ୍ରମର ନଟିଆର ଦୂର ସଂପର୍କୀୟା ମାଉସୀ ଝିଅ ଭଉଣୀ ସୁଲୋଚନାକୁ ବାହା ହୋଇଛି । ସେତେବେଳେ ନଟ ଯାଜପୁର ରୋଡ୍ ଡିପୋରେ ଥାଏ । ନଟର ବଡ଼ ଇଚ୍ଛା ଥିଲା ସେ ସୁଲୋଚନାକୁ ଘରକୁ ଆଣିବ । ଏଥିପାଇଁ ସେ ଚେଷ୍ଟା ଚରିତର ଅଂତ ରଖି ନଥିଲା । ଶରଧା ନାନୀ, କେଳୁ ମଉସା ପ୍ରଭୃତିଙ୍କୁ ମଧ୍ୟସ୍ଥି କରି ମଉସା-ଦାମ ପୁହାଣଙ୍କୁ ବହୁତ କୁହାବୋଲା କରିଥିଲା । ମାତ୍ର ତାର ଲଫଂଗା ପ୍ରକୃତି ଓ ବାହାପିଆ ଢଂଗ ଦେଖି ବାପମାଆ କି ସୁଲୋଚନା କେହି ରାଜି ହେଲେ ନାହିଁ । ତା'ପରେ ବି ସେ ସେତେବେଳେ ଠିକା କିଂବା ବଦଳି କାମ କରୁଥାଏ । କୌଣସି ଫରେଷ୍ଟ ଗାର୍ଡ଼ ଛୁଟିରେ ଗଲେ ମାସେ ଦି'ମାସ ପାଇଁ ତା' ଜାଗାରେ କାମ କରେ, ତା'ପରେ ଯେଉଁ ବେକାରକୁ ସେଇ ବେକାର ।

ନଟ ସେଦିନେ ସୁଲୋଚନାକୁ ପୋଖରୀ କୂଳରେ ଧମକାଇଥିଲା—ଦେଖିବ ଖରେ କିଏ ବାହା ହେବ । ମୁଁ ତାକୁ ସାବାଡ଼ କରିଦେବି । ସୁଲୋଚନା ଆଜି ପର୍ଯ୍ୟଂତ ମଧ୍ୟ ସେ କଥାଟା ଭୁଲି ନାହିଁ । ନଟର ମୁଖଭଂଗୀ ଏବଂ କଂଠସ୍ୱର ଭାର ଏବେ ମଧ୍ୟ ବେଳେବେଳେ ମନେ ପଡ଼ିଯାଏ । ସେ ସତରେ ବଡ଼ ଭୟଭୀତ ହୋଇପଡ଼େ ।

ନଟିଆ—ବନମ -ନଟ—ବନାମ ନଟବରର କଅଁଳ କଅଁଳ ବାଳୁଆ ହାତ ଓ'ପଟା ଉପରେ ତାର ଚେପ୍ଟା ନାକ ଆଉ ହାଡ଼ୁଆ ଗାଲ ଦେଖିଲେ ଯାହାକୁ ତାହାକୁ ହେଲେ ବି ଡର ମାଡ଼ିବ । ପିଲାଦିନରୁ ହିଁ ସୁଲୋଚନା ତା'ଉପରେ ଚିଡ଼ା । ତା ଉପରେ ପୁଣି ତାହାର ପ୍ରକୃତି—କଡ଼ା ମିଂଜାସ ଆଉ ଉପରେ ପଡ଼ି ମାମଲତକାର ମାଳକାର ଅଭ୍ୟାସ ପ୍ରଥମରୁ ହିଁ ଘୃଣା ଉଦ୍ରେକ କରିବ । ଏବେ ପୁଣି ସେ ଲଂବା ଲଂବା ବାଳ ଆଉ କଳା ରଖି ଆହୁରି ବନ୍ଦୁକିଆ ଦିଶୁଚି ।

ସେଦିନ ଗାଆଁରେ ଯାତ୍ରା ହେଉଥାଏ । ଜଟଣୀ ଅପେରା ପାର୍ଟି 'କଂସାସୁର ବଧ' ସୁଅଂଗ କରୁଥାଂନ୍ତି । ଭ୍ରମର ଓ ସୁଲୋଚନା ଗାଆଁର ସ୍ୱପ୍ନେଶ୍ୱର ମହାଦେବଂକ ଦେଉଳ ବେଢ଼ା ଆଗରେ ଯାତ୍ରା ଦେଖୁଥାଂନ୍ତି । ନଟ ମଧ୍ୟ ଗୋଟାଏ ପିଂକା ଟାଣି ଯାତ୍ରା ଦେଖୁଥାଏ ଏବଂ ମଝିରେ ମଝିରେ ଝିଅପିଲାମାନେ ନାଚଗୀତ କଲାବେଳେ ଅଶ୍ଳୀଳ ଟିପ୍ପଣୀମାନ ଛାଡ଼ୁଥାଏ । ଯାତ୍ରା ଭାଂଗିବାପରେ ସମସ୍ତେ ଲୋକ ଗହଳି ଭିତରେ ଖୁଂଦାଖୁଂଦି ହୋଇ ଫେରୁଥିବା ବେଳେ ସୁଲୋଚନାର ମନେହେଲା କିଏ ଯେପରି ତା କଡ଼ରୁ ହାତ ବଢ଼ାଇ ତା ବାଆଁ ସ୍ତନକୁ ଜୋରରେ ଚିପି ଦେଇ ଲୋକମେଳରେ କୁଆଡ଼େ ହଜିଗଲା । ସେ ପାଟି କରି ଭ୍ରମରକୁ ଡାକିଲା । ଭ୍ରମର ଲୋକଭିଡ଼ରେ ଚାରି ପାଂଚ ହାତ ପଛରେ ପଡ଼ି ଯାଇଥାଏ । ସେ ଦୌଡ଼ି ଆସି କଥା କଣ ବୋଲି ପଚାରିବାରେ ସୁଲୋଚନା ଆଗରେ ଚାଲିଯାଉଥିବା ନଟିଆ ଆଡ଼କୁ ଆଂଗୁଠି ଦେଖାଇଦେଲା । ଭ୍ରମର ଯାଇ ନଟିଆକୁ ଧରି ପକାଇଲା । ନଟିଆ କିଛି ଜାଣେ ନାହିଁ, ଆଉ କିଏ ହୋଇଥିବ ବୋଲି ଭୁରୁଡ଼ି ମାରିଲା । ଦୁହିଂକ ଭିତରେ କଥା କଟାକଟି ହେଉଥିବାବେଳେ କେତେ ଜଣ ଯାତ୍ରାଲୋକ ମଧ୍ୟ ସେଠି ଜମିଯାଇ କଥା କ'ଣ ପଚାରିଲେ । ନଟିଆ ଓ ଭ୍ରମର ଉଭୟେଁ ଉଭୟଂକ ଦେଖିନେବେ ବୋଲି ଚଢ଼ାଚଢ଼ି ହେଲେ ।

ସେହିଦିନୁ ଗାଁରେ ହାଟ ହୋଇଗଲା ଯେ ନଟ ଆଉ ଭ୍ରମର ଚଢ଼ାଚଢ଼ି ହୋଇଛଂନ୍ତି । ଶୀଘ୍ର କ'ଣ ଗୋଟାଏ ଘଟିବ । ଦି'ଦିନପରେ ହାଟପାଳି ଦିନ ମଦନ ସାହୁ ଦୋକାନ ଆଗରେ ନଟ ସମସ୍ତଂକୁ ଶୁଣାଇ ଶୁଣାଇ କହିଲା ଃ ମୁଁ ତା ଖୁନ୍ ପିଇଯିବି । ଭ୍ରମର ମଧ୍ୟ ଟିକେ ଦୂରରେ କଂସାପିତଳ ଦୋକାନୀ ହରି ବେହେରା ଆଗରେ କହିବାର ଶୁଣାଗଲା, ମୁଁ ଯଦି ତାକୁ ଖତମ୍ ନ କରିଛି ମୋ ନାଆଁ ଭ୍ରମର ସାହୁ ନୁହେଁ ।

କ୍ରମେ ଦିନ ବିତିଗଲା । ଲୋକେ ମଧ୍ୟ ଧୀରେ ଧୀରେ ନଟ-ଭମରା କଳି ତକରାଳ କଥା ଭୁଲିଗଲେଣି । ଛ' ସାତ ମାସ ପରେ ଦିନେ ମୁହଁ ସଞ୍ଜବେଳେ ସୁଲୋଚନା ଜଂଗଲ ଆଡ଼ୁ ଧଇଁ ସଇଁ ହୋଇ ଧାଇଁ ଧାଇଁ ଆସି ନିଜ ଘରେ ପଶି ପ୍ରାୟ ଅଚେତ ହୋଇପଡ଼ିଗଲା । ଭମରା ଓ ଆଉ କେତେ ଜଣ ଯୁବକ ଖଂଡେ ଦୂରରେ ଛିଡ଼ା ହୋଇ ଗପସପ ହେଉଥିଲେ । ସେମାନେ ଦୌଡ଼ି ଆସି ସୁଲୋଚନାକୁ ଚେତା କରାଇଲେ । କଥା କଣ ପଚାରିଲେ । ସୁଲୋଚନା ଯାହା କହିଲା ସେଥିରୁ ଜଣାଗଲା ଯେ ସଂଜ ବେଳରୁ ବାଛୁରିଟା ନ ଆସିବାରୁ ସେ ସେଟାକୁ ଖୋଜିବା ପାଇଁ ଟିକିଏ ଜଂଗଲ ଭିତରକୁ ଯାଇଥିଲା । କିଏ ଗୋଟାଏ ବୁଦା ଭିତରୁ ବାହାରି ଆସି ତାକୁ ଟଣା ଓଟରା କରିବାକୁ ଲାଗିଲା । ଅଂବଗଛ ତଳକୁ ଟିଂକିନେଲା । ସେ ପ୍ରାଣବିକଳରେ ପାଟି କରି ଛଟିପିଟି ହୋଇ ପଳାଇ ଆସିଲା । ବାଉରୁଣୀମାନେ ବଣରୁ କଂଟାଝାଟି ମୁଂଡେଇ ଫେରୁଥିଲେ । ସେମାନେ ମଧ୍ୟ ପାଟିଛୁଂଚି କଲେ । ଲୋକଟା ପଳାଇଗଲା । ସେ ଲୋକଟା କିଏ ବୋଲି ସମସ୍ତେ ଏକ ସ୍ୱରରେ ପଚାରିବାରେ ସୁଲୋଚନା କହିଲା—ନଟଆ ।

ଏହାପରେ ଭମରା ଗୋଟାଏ ଫାର୍ସା ନେଇ ନଟ ଘରଆଡ଼େ ଦୌଡ଼ିଲା । ତା ସାଂଗରେ ଚାରି ପାଂଚ ଜଣ ଟୋକା ମଧ୍ୟ ଠେଂଗାବାଡ଼ି ନେଇ ଛୁଟିଲେ । ନଟ ବାଡ଼ିପଟ ଦେଇ କୁଆଡ଼େ ଜଂଗଲ ଭିତରକୁ ପଳାଇଗଲା । ଆଠ ଦଶ ଦିନ ଯାଏ ସେ ଆଉ ଗାଆଁ ମାଡ଼ିଲା ନାହିଁ । ତା'ପରେ ସେ ଗାଆଁକୁ ଫେରିବା ପରେ ଭମରା ତାକୁ ଛକିଲା ।

ଗାଆଁଲୋକେ କ୍ରୁଦ୍ଧାକ୍ରୁଦ୍ଧ ହେଲେ ଏଥର କିଏ ହେଲେ ଜଣେ ଯିବ । ଗାଆଁର ନାଳ ପୋଲ ଉପରେ ବସି ଗୋଡ଼ ହଲାଇ ହଲାଇ ନଟ ସମସ୍ତଂକୁ ଶୁଣେଇ ଶୁଣେଇ କହେ. ଏଇଥର ମୁଁ ତାକୁ ଦେଖିନେବି । ଭମରା ବି ମହାଦେବ ଦେଉଳ ସାମନାରେ ସମସ୍ତଂକୁ ଶୁଣାଇଦେଲା, ତା ରକ୍ତ ଟୋପା ନ ଦେଖିଲାଯାଏ ମୋର ଶାଂତି ନାହିଁ ।

ଗାଁର କେତେ ଜଣ ଯୁବକ କ୍ରୁଦ୍ଧାକ୍ରୁଦ୍ଧ ହେଲେ, ଏଥର କିଏ କାହାକୁ ଅଗ ଖତମ କରିବ ତାହା କେବଳ ଭଗବାନଂକୁହିଁ ଜଣା ।

ବର୍ଷାଋତୁ ଆରଂଭ ହୋଇଗଲା । ବର୍ଷା-ବିଜୁଳି-ଘଡ଼ଘଡ଼ି ନାଦରେ ସାରା ଜଂଗଲଟା କଂପି ଉଠୁଛି । ମଲଣ୍ଡୁଣି ନଈ ଆଉ ଗାଆଁ ମଝିରେ ଯାଇଥିବା ଯୋଡ଼ରେ ପାଣି ଉଛୁଳି ଉଠି ଗାଆଁ ଭିତରକୁ ପଶି ଆସୁଛି । ସକାଳ ହେଲା ବେଳକୁ ପ୍ରାୟ ଆଂଠୁଏ ପାଣି ଗାଆଁ ଭିତରେ ଜମି ଗଲାଣି । ସିଆଡ଼େ ଜଟିଆ ମୁଂଡିଆ ଉପରୁ ମଧ୍ୟ ପାଣିଧାର ଅନର୍ଗଳ ବହି ଆସି ସବୁଆଡ଼ ବୁଡ଼ାଇ ଦେଲାଣି । ବାଉଁଶ ଭେଳା କରି ଲୋକମାନେ

ଏଣେ ତେଣେ ଚଳପ୍ରଚଳ ହେଉଛନ୍ତି । ଗାଁ ମଝିକୁଦ ଉପରେ ଥିବା ଡାକ୍ତର, ସ୍କୁଲ ଓ ପଣ୍ଡା ଦୋକାନକୁ ସୌଦାପତ୍ର ଆଣି ଯୋଗେଇବାପ କରୁଛନ୍ତି । କେତେଜଣଙ୍କ ଘର ଭିତରେ ମଧ୍ୟ ପାଣି ପଶିଗଲାଣି । ପ୍ରତିବର୍ଷ ପ୍ରାୟ ବର୍ଷାଦିନେ ଗାଆଁବାଲାକୁ ଏପରି ଦଶା ଭୋଗିବାକୁ ପଡ଼େ । ସମସ୍ତଙ୍କ ଘରେ ଖଣ୍ଡିଏ ଖଣ୍ଡିଏ ଢୁଙ୍ଗ ଡଂଗା ପିଣ୍ଡା ଖୁଣ୍ଟରେ ବଂଧା ହୋଇଥାଏ । ଗାଁରେ ବଢ଼ିପାଣି ପଶିଲେ ଲଗ୍‌ଲଗ୍ ପ୍ରାୟ ଛଅ ସାତ ଦିନ ଡଂଗାରେ ଇଆ ଘରକୁ ସିଏ ଯାଆ ଆସ କରନ୍ତି, ଏପରିକି ନିକଟତମ ପଡ଼ଶା ଘରକୁ ମଧ୍ୟ । ବଢ଼ି ଯାଂଗରେ ଆସେ ନାନା ପ୍ରକାର ରୋଗ, ବ୍ୟାଧି—ଜର, ଖାଦ, ଝାଡ଼ା ବାନ୍ତି ଇତ୍ୟାଦି । କୁଦରେ ଗୋଟିଏ ଛୋଟିଆ ସ୍ୱାସ୍ଥ୍ୟକେନ୍ଦ୍ର ଅଛି । କେହି କେହି ଢୁଙ୍ଗ ଡଂଗାରେ ଯାଇ ଔଷଧ ମେଁସ୍ଟୁସ୍ ଆଣନ୍ତି । କଏ ମରଗଲେ, ପାଣିରେ ଭସାଇ ଦିଅନ୍ତି । ବର୍ଷାଋତୁ ପରେ ପ୍ରଚୁର ପୋଟଳ, କୋବି, ବିଲାତି ବାଇଗଣ ଫଳେ । ପୋଟଳ କଲେ ପଚଶ ପଇସା । ଗାଆଁ ଲୋକେ ପନିପରିବା ଆଣି କଟକରେ ଦେଢ଼ଟଙ୍କା କିଲୋ ଦାମରେ ବିକ୍ରି କରନ୍ତି । ଫଗୁଣ-ଚଇତରେ ଫୁଲ ବାସ୍ନା, ଆମ୍ବ ବଉଳ ବାସ୍ନାରେ ଜଂଗଲଟା ମହକି ଉଠେ ।

ସାରା ଜଂଗଲଟା ଯେମିତି ବର୍ଷା ପବନରେ ଦୋହଲୁଛି । ରାତି ହେଲେ ଅଂଧକାର ଭିତରେ ଆଉ ଗାଆଁ ଗଂଡା ଗଛବୃକ୍ଷ କିଛି ଦିଶୁ ନାହିଁ । ସବୁ ମିଶି ଯେମିତି ଏକ ଜମାଟ ଅଂଧକାର । ତା' ଭିତରେ ଜୀବନର ଚିହ୍ନବର୍ଣ୍ଣ ନାହିଁ କି କ୍ଷୀଣ ସଙ୍କେତ ପର୍ଯ୍ୟନ୍ତ ନାହିଁ ।

ଜଂଗଲରେ ମଧ୍ୟ ବଢ଼ିପାଣି ପଶି ଯାଇଛି । ସାପ, ବିଲୁଆ, କୋକଶିଆଳି ଏବଂ ଗୋଟେ ଅଧେ ହରିଣ ମଧ୍ୟ ପାଣି ସୁଅରେ ଭାସି ଆସି ଗାଁରେ ଲାଗନ୍ତି କି କେଉଁ ଅଥଳ କୂଳ ପାଣିରେ ଭସିଯାନ୍ତି ।

ବର୍ଷା ଟିକଏ ଛାଡ଼ି ଆସିଲାଣି । ନଟ ଗୋଟିଏ ଢୁଙ୍ଗ ଡଂଗାରେ ବସି ଜଂଗଲକୁ ଗଲା । ସାଂଗରେ ଛତା ଓ ଗୋଟାଏ ଲଣ୍ଠନ । ଆଜି ତାର ଚେକ୍ ଗେଟ୍‌ରେ ଡ୍ୟୁଟି ଅଛି । ସେ ଗେଟ୍ ପାଖ ଗୁମୁଟିରେ ଝରକା କବାଟ କିଳି ବସି ରହିଛି । ଝଡ଼ ବର୍ଷାର ସୁଯୋଗ ନେଇ କଂଟ୍ରାକ୍ଟରର ଟ୍ରକ୍ ମଧ୍ୟ ଜଂଗଲରେ ପଶିଛି । ସେମାନେ ବଡ଼ବଡ଼ ଶାଳଗଛମାନ କାଟି ନେଇ ଟ୍ରକ୍ ବୋଝେଇ କରି ଫେରିବେ । ନଟ ଗଛକଟାର ଶବ୍ଦ ଶୁଣିପାରୁଥାଏ । ମାତ୍ର ତାର କିଛି କରିବାର ଉପାୟ ନାହିଁ । କ୍ରମେ ଟ୍ରକ୍‌ଟା ଚେକ୍ ଗେଟ୍ କଡ଼ରେ ଆସି ପହଂଚିଲା । ଉପରୁ ବାଉଁଶ ଆଗୁଆଳ ଉଠାଇବାକୁ ହର୍ଣ୍ଣ ମାରିଲା । ମାତ୍ର ନଟ ଶୁଣିଲା ନାହିଁ । ହଠାତ୍ ଦୁଇ ତିନି ଜଣ ଟ୍ରକ୍ କୁଲି ଆସି ନଟକୁ ଗୋଆଳିରେ ଗେଟ ଖୋଲିବା ମାଗିଲେ । ମାତ୍ର ନଟ ଖୋଲିବ ଦେଲା ନାହିଁ । କହିଲା ରାତିରେ ଗେଟ୍ ଖୋଲିବାକୁ ରେଂଜର ବାବୁ ମନା କରିଛନ୍ତି । ସେ ସକାଳେ ଜିପ୍‌ରେ ଆସି ଟ୍ରକଚକ ଚିହ୍ନ ଦେଖିଲେ ତା' ଚାକିରି ଯିବ । ବିନା ପାସ୍‌ରେ ଗେଟ୍ ଖୋଲି ପାରିବ ନାହିଁ । ବୋଲି ସେ ଜବାବ ଦେଲା ।

ସେମାନେ ନଟକୁ ନିର୍ମମ ମାଡ଼ ଚଢ଼ାଇ ବେହୋସ କରି ଦେଇ ଗେଟ୍ ଖୋଲି ଟ୍ରକ୍ ନେଇ ପଳାଇଗଲେ । ସେତେବେଳକୁ ରାତି ପ୍ରାୟ ଦୁଇଟା ହେବ । ଆଖପାଖରେ ଜନମାନବର ଶୋର ଶବ୍ଦ ନାହିଁ । ଜଂଗଲରୁ ସାଇଁ ସାଇଁ ଶବ୍ଦ ଆସୁଛି ।

ସକାଳୁ ହୁଣ୍ଡା ଡଂଗାରେ ଚଢ଼ି ଭ୍ରମର ବାହାରିଲା ଗାଆଁ ଭିତରେ ଡାକ ବିଲି କରିବାକୁ । ଫରେଷ୍ଟ ରେଂଜର ଅଫିସ୍‌ରହିଁ ବେଶୀ ଚିଠି ଥାଏ । ସେ ଯାଇ ଚେକ୍ ଗେଟ୍ ଗୁମୁଟି ଘର ଝରକା ଫାଂକରେ ଉଂକିମାରି ଦେଖେ ଯେ ନଟ ବେହୋସ ହୋଇ ତଳେ ପଡ଼ିଛି । ସେ ଗଁଅ ଗଁଅ ଶବ୍ଦ କରୁଛି । ତାର ଦୁଇ କାନରୁ ରକ୍ତ ଧାର ବୋହି ଆସି ମୁହଁଟାକୁ ଲାଲ କରି ଦେଇଛି । ମାଛି ଭଣଭଣ ହେଉଛଂତି ।

ସେ କବାଟକୁ ଧକ୍କା ଉପରେ ଧକ୍କା ମାରିଲା । ମାତ୍ର ନଟ ଉଠିଲା ନାହିଁକି ଓଁ ଚୁଁ କଲା ନାହିଁ । ସେ ନଟକୁ ଅଧେ ଟେକାଟେକି କରି ଏବଂ ଅଧେ ଘୋଷାରି ଘୋଷାରି ନେଇ ହୁଣ୍ଡା ଡଂଗାରେ ଶୁଆଇଦେଲା । ତା'ପରେ ଚାଲିଲା ସ୍ୱାସ୍ଥ୍ୟକେଂଦ୍ରକୁ ଗାଁମଝି ଢ଼ିପକୁ । ତାକୁ ଡାକ୍ତର ବାବୁଂକ ଜିମ୍ମା କରିଦେଇ ସେ ଚିଠି ବିଲି କରିବାକୁ ବାହାରିଗଲା ।

କେତେ ଘଂଟାପରେ ନଟର ଚେତା ଫେରିବା ପରେ ସେ ଡାକ୍ତରବାବୁଂକଠାରୁ ସବୁ କଥା ଶୁଣି ନିଜ କାନକୁ ବିଶ୍ୱାସ କରି ପାରିଲା ନାହିଁ । ସେ ଭ୍ରମରର ଋଣ କିପରି ଶୁଝିବ କେବଳ ସେଇକଥାହିଁ ଭାବୁଥାଏ । ସବୁ ପଛକଥା, ରାଗ ତକରାଳ ସେ ଭୁଲିଗଲାଣି ।

କିଛିଦିନ ପରେ ମହାଜନ ସାହୁ ଦୋକାନୀ ଭ୍ରମରକୁ କହିଲା—"କାଲି ନଟ ଆସିଥିଲା । ସେ ତ ଖାଲି ତୋ'ରି ଗୁଣ ଗାଉଥିଲା । କହୁଥିଲା, ଭ୍ରମର ଭାଇ ତା ଜୀବନ ରଖିଲା । ସେ ତୋ ଋଣ ଜୀବନରେ ଶୁଝି ପାରିବ ନାହିଁ ବୋଲି ପସ୍ତାଉଥିଲା ।"

ଭ୍ରମରର ମନ ବହୁତ ନରମ ହୋଇଗଲା । କିଂତୁ ତଥାପି କେଉଁଠି ଦେଖାହେଲେ ସେ ନଟ ସଂଗେ କଥାବାର୍ତ୍ତା କରିବାକୁ ସଂକୋଚ ବୋଧ କରୁଥାଏ । ନଟ ମଧ୍ୟ ଭରସି କରି ତା ସଂଗେ କଥାବାର୍ତ୍ତା କରୁ ନଥାଏ । ଦୁହେଁ ଦୁହିଁକି ଖାଲି ଦୁହିଁକ କିଛି ସମୟ ଚାହିଁ ରହି ଯେଝା ବାଟରେ ଚାଲି ଯାଉଥିଲେ ।

ମାସେ ଦି'ମାସ ପରେ ନଟ ଶୁଣିଲା ହାଟାକେଲ ଦୋକାନୀ ସାମସେର ପାଖରୁ, ଭ୍ରମର ତା ପାଇଁ ଦୁଃଖ କରୁଥିଲା । ତାକୁ ଯେ ଭଗବାନ ଏଡ଼େ ବଡ଼ ବିପଦରୁ ରକ୍ଷା କଲେ ସେଥିପାଇଁ ସେ ଠାକୁରଂକୁ କୃତଜ୍ଞତା ଜଣାଉଥିଲା । କହୁଥିଲା—'ଯାହାକୁ ରଖିବେ ଅନଂତ, କି କରି ପାରେ ବଳାବଂତ ।'

ନଟ ସବୁ ଶୁଣେ ମାତ୍ର ଭମରକୁ ଡାକି କଥା କହିପାରେ ନାହିଁ । ଭମର ସବୁ ଶୁଣେ ମାତ୍ର ନଟକୁ କିଛି କହିପାରେ ନାହିଁ । କେବଳ ଦେଖା ହେଲେ ଦୁହିଁଙ୍କ ମୁହଁରେ ଟିକିଏ ମୁରୁକି ହସ ଯାହା ଫୁଟିଉଠି ମିଳାଇଯାଏ ।

ଏପରି କେତେ ମାସ ଗଡ଼ିଗଲା । ଦନେ ନଟ ଗାଆଁ ପଡ଼ୋଶୀରୁ ଶୁଣିଲା, ସୁଲୋଚନା ଅନ୍ତଃସତ୍ତ୍ୱା । ଆଉ ଦି' ମାସ ପରେ ସେ ପିଲାର ମାଆ ହେବ ।

ସେଦିନ ରେଂଜର ବାବୁ ଗୋଟାଏ ହରିଣ ମାରିଥାଂନ୍ତି । ନଟକୁ ଡାକି ଦେଢ଼ କେ.ଜି ଖଂଡେ ମାଉଁସ ଦେଲେ । ନଟ ମୁଂଡକୁ କଣ ପାଇଲା କେଜାଣି, ସେ ଯାଇ ଭମର ଦାଆରେ ପହଂଚିଲା । ସୁଲୋଚନା ଆଉ ଭମର ପିଂଡାରେ ବସି ଗପସପ ହେଉଥିଲେ । ନଟ କହିଲା, ଭମର ଭାଇ, ଧରିଲ ଭଉଣୀ ! ଏ ମିରିଗ ମାଉଁସ ତମେ ନିଅ । ତରକାରି କରିବ । ମୋତେ ରେଂଜର ବାବୁ ଦେଇଥିଲେ ।

ଭମର ଓ ସୁଲୋଚନା ମୁରୁକି ହସି କହିଲେ, ସବୁ ମାଉଁସ କାହିଁକି ଦେଉଛ ? ତମେ ଅଧେ ରଖ ।

ନଟ କହିଲା, ମୁଁ ମିରିଗ ମାଂସ କଣ କରିବ ? ମୁଁ ତ ମୁରାରି ନନା ହୋଟେଲରେ ଖାଏ । ମୋର ଏବେ ସେଥିରେ ବାସ କରିବ କିଏ ?

ଭମର କହିଲା, ନଟ ଭାଇ, ତମେ ଆଜି ରାତିରେ ଆମ ଘରେ ଖାଇବ । ଆମର ନିମିତା ରହିଲା ।

ସୁଲୋଚନା ଲାଜରେ ସଢ଼ିଗଲା । ସେ ଥରେ ନଟ ମୁହଁକୁ ଅନାଇ ପୁଣି ମୁହଁ ତଳକୁ କରିଦେଲା ।

ନଟ କହିଲା, ହଉ, ଭଉଣୀ ଘରୁ ନିମିନ୍ତା ଆସିଲାଣି ସେତେବେଳେ ମୁଁ ନାହିଁ କରିବ କିମିତି ? କିଂତୁ କାହିଁ ମୋ ଭଉଣୀ ତ କିଛି କହୁ ନାହିଁ ।

ସୁଲୋଚନା ଲାଜରେ ନଇଁଯାଇ ତା'ପରେ ଟିକିଏ ହସି କହିଲା, ହଁ, ହଁ, ତମେ ଆଜି ଆମ ଘରେ ଖାଇବ ନଟଭାଇ । □□□

୨୦ । ୧୦ । ୧୯୮୩

## ଜାଗିର

ପୂର୍ଣ୍ଣଗଡ଼ର କରଦ ରାଜ୍ୟଟା ଗଡ଼ଜାତ ମିଶ୍ରଣପରେ ମୋଗଲବଂଦରେ ମିଶିଗଲା । ପ୍ରଜା ମଂଡଳର ଲୋକମାନଂକ ମନରେ ଆନଂଦ ନ ଧରେ ! ରାଜ୍ୟଟା ପାଣ୍ଡିବର୍ଗ ଜିଲ୍ଲାରେ ସାମିଲ ହୋଇଗଲା । ଏହାର ମାନଚିତ୍ର ବଦଳିଗଲା । ବଦଳିଗଲା ସବୁ ପ୍ରଜାଂକର ମନ ଓ ଭାବନାର ରୂପରେଖ । ସେମାନଂକର ସ୍ୱପ୍ନ ସାର୍ଥକ ହୋଇଛି । ଏଣିକ ଆଉ ରାଜା ବଂଚିଥିଲେ ବ, ତାଂକ ହାତରେ କଛି କ୍ଷମତା ରହିବ ନାହିଁ । ଆଉ ବେଠି, ଭେଟି, ବେଗାର, ମାଗଣ, କିଂବା ହାତୀଖେଦାରେ ଶହ ଶହ ଲୋକଂକୁ ପ୍ରାଣବଳି ଦେବାକୁ ହେବ ନାହିଁ । ସମସ୍ତେ ହେବେ ସ୍ୱାଧୀନ ଭାରତର ବାସିଂଦା । ଅନ୍ୟାୟ, ଅନାଚାର ଆଉ ହୁଂକାପିଟା ଶାସନ ଚଳିବ ନାହିଁ । କେତେ ଲୋକ ପ୍ରଜା ଆଂଦୋଳନରେ ଜେଲ, ଗୁଳି ଆଉ ଫାଶିକାଠରେ ନ ମଲେ ! ଇଂରାଜ ସରକାର ଥରକୁ ଥର ଫଉଜ ପଠାଇ ଲୋକଂକ ଉପରେ ନାହିଁ ନଥିବା ଅତ୍ୟାଚାର ଚଳାଇଲା । ଘରଦ୍ୱାର ଲୁଟ୍ କଲା । ସ୍ତ୍ରୀ ପିଲାଂକ ଉପରେ ସୈନ୍ୟମାନେ ବଳାତ୍କାର କଲେ, ଇଜ୍ଜତ ମହତ ନେଲେ ।

ତଥାପି ଆଂଦୋଳନ ଦବିଲା ନାହିଁ । ବରଂ ଦିନକୁ ଦିନ ବେଶୀ ବେଶୀ ବଢ଼ିଚାଲିଲା । ଏ ଶୃଙ୍ଖଳିତ ଧଡ଼ଗୁଡ଼ାକ ଭିତରେ ଏତେ ହିମ୍ମତ, ଏତେ ଟାଣପଣ କେଉଁଠି ଆଜଯାଏ ଲୁଚିଥିଲା ?

ଶେଷରେ ଇଂରାଜ ସରକାର ଗଲା । ତା' ପରେ ପରେ ଦିନ କେଇଟା ଭିତରେ ରାଜାରାଜୁଡ଼ାଏ ମଧ୍ୟ ଗଲେ ।

ପୂର୍ବେ ରାଜରାଜୁଡ଼ା ଅମଳରେ ବହୁତ ଲୋକ—ଯେଉଁମାନେ କି ରାଜାଂକର ପାଖଲୋକ, ବହୁତ ପ୍ରକାର ନିଷ୍କର ଜାଗିର ପାଉଥିଲେ । ପ୍ରଜାପଂଡ଼ାଂକଠାରୁ ଆରଂଭ କରି ଭିତର ପରସ୍ତ ପର୍ଯ୍ୟଂନ୍ତ (ଯେଉଁମାନଂକ କାମ ଥିଲା ରାଣୀମହଲରେ ପହରା ଦେବା—ରାଣୀବର୍ଗ ଓ ପୋଲଣ୍ଡି ପରବାଣ୍ଟଂକୁ ଜଗିବା, ଯେପରି ବାହାର ଲୋକ କେହି ନ ଆସଂତି କି ଏମାନେ ବାହାରକୁ ଯାଇ କାହା ସଂଗେ ମିଳାମିଶା ନ କରଂତି । ସାଧାରଣତଃ ହିଂଜଡ଼ାମାନଂକୁ ହିଁ ଏ କାମରେ ନିଯୁକ୍ତ କରାଯାଉଥିଲା । ) ଏବଂ ବାହାର ପରସ୍ତ, କୀର୍ତ୍ତନିଆ—ଯେଉଁମାନଂକର କାମ ଥିଲା, ଉଆସରେ ପ୍ରଜାମାନଂକୁ ଧରି ନେଇ ଏକ ନିର୍ଦ୍ଦିଷ୍ଟ କୋଠରୀରେ ବଂଦୀକରି ନାନାପ୍ରକାର ଅତ୍ୟାଚାର କଲାବେଳେ ସେମାନଂକ ଆର୍ତ୍ତଚିତ୍କାର ଯେପରି ବାହାରକୁ ନ ଶୁଭିବ, ସେଥିପାଇଁ କୋଠରୀ ବାହାରେ ଖୁବ୍ ଜୋରରେ ଖୋଲ କରତାଳ ବଜାଇ ହରିନାମ କୀର୍ତ୍ତନ କରିବା,—ସମସ୍ତେ ବାଛି ବାଛି ଜମି ନିଷ୍କର ଜାଗିର ଭୋଗ କରୁଥିଲେ ।

ଗଡ଼ଜାତ ମିଶ୍ରଣ ପରେ ରାଜ୍ୟ ସରକାରଂକ ପକ୍ଷରୁ ନୂଆ ମିଲାନ ଖସଡ଼ା, ପୁଣି ବଂଦୋବସ୍ତ ହେବ । ନୂଆ ଖତିଆନ ହେବ । କିଏ କେଉଁ ଜାଗିର ପାଉଛି, କର ଦେଉଛି ନା ନସ୍ତର, ଏ ସବୁର ଯାଂଚ ବିଚାର ହେବ । ତେବେ ସରକାରଂକର ମତଥିଲା ପୁରୁଣା ପ୍ରଥାରେ ବେଶୀ ବଦଳାବଦଳି ନ କରିବା । ନୋହିଲେ ଲୋକଂକ ଭିତରେ ଅସଂତୋଷ ଦେଖାଦେବ ।

ଏଥିପାଇଁ ନିଯୁକ୍ତ ହୋଇଥିବା ସ୍ପେଶାଲ ତହସିଲଦାର ଏବଂ ସ୍ଥାନୀୟ ତହସିଲଦାରଂକ ଇଜଲାସରେ ରୋଜ କାଗଜପତ୍ର, ଦଲିଲ, ଦସ୍ତାବିଜ୍ ପାଉତି ଇତ୍ୟାଦିର ଯାଂଚ ଚାଲିଥାଏ । ଶହ ଶହ ଜାଗିରଭୋଗୀ କାଗଜପତ୍ର ଧରି କଚେରିରେ ଜମା ହେଉଥାଂତି । ନିଜ ନିଜ ଦାବୀ ପେଶ୍ କରୁଥାଂତି ଏବଂ ତାହା ସାବ୍ୟସ୍ତ କରିବାକୁ ଚେଷ୍ଟା କରୁଥାଂତି । କଚେରି ହତା ଲୋକାରଣ୍ୟ ହୋଇ ରହୁଥାଏ ।

ଦିନେ ହଠାତ୍ ଦିନ ଏଗାରଟାବେଳେ ଜଣେ ମଝିଲା ବୟସର କଂଧ ବାଉ କୋଣ ଦିଗରୁ ଚାଲି ଚାଲି ଆସି ଅଫିସରଂକ ଆଗରେ ହାଜର ହେଲା । ତା ଦେହ ନିଖଂଡ କଳା । ଲଂବା ଚୌଡ଼ା ମଣିଷଟାଏ । କପାଳରେ ନାଇଚି ଦେଖାଂକର ଗୋଟାଏ ଟଂକା ଆକାରର ସିଂଦୂର ଟୋପା । ବେକରେ ପକାଇଚି ଧଂଡାମାଳ । ମୁଂଡରେ ବଡ଼ ବଡ଼ ବାଳ, ପଛରେ ଗୋଟାଏ ଗଂଠି ପକାଇ ଦେଇଛି । ଛାତି ଦ'ପଟା ବାଘ ଛାତି ପରି ଫୁଲି ଫୁଲି ଉଠୁଛି । ଲୋକଟାର ହାତରେ ଗୋଟାଏ ମସ୍ତବଡ଼ କଟୁରି, ତାହା ମଧ୍ୟ ମାଆଂକ ସିଂଦୂରରେ ଦାଉ ଦାଉ କରୁଚି । ଲୋକଟାକୁ ଦେଖିଲେ ଭେଂଡିଆ ଜବାନଂକୁ ବି ଡର ମାଡ଼ିବ । କଚେରି ଦୁଆରେ ଜଗିଥିବା ସିପାହି ବରକଂଦାଜ ଲୋକଟାକୁ ଅଟକାଇବାକୁ ଯାଉଥିଲେ । ମାତ୍ର ସେ ସେମାନଂକୁ ଠେଲି ଦେଇ ହାକିମଂକ କମରା ଭିତରକୁ ସିଧା ପଶିଗଲା । ତାକୁ ଦେଖି ହାକିମ, ପେସ୍କାର, ଅମିନ, ଅମଲା ସମସ୍ତେ ଛନିଆ ହୋଇଗଲେ ।

ଲୋକଟା ହାକିମଂକୁ ଜୁହାର ହୋଇ ତାର ସିଂଦୂରବୋଳା କଟୁରିଟାକୁ ତାଂକ ପାଦତଳେ ରଖିଦେଲା । ହାକିମ ତା' ମୁହଁକୁ ହତ୍‌ବାକ୍ ହୋଇ ଅନାଇଥାଂନ୍ତି । ଲୋକଟା କହିଲା – ହଜୁର, ମୋ' ନାଁ ପାଣ୍ଡୁ କଂଧ । କରମୋଲ ପ୍ରଗଣା ଦଣାର ମୌଜାରେ ମୋର ଘର, ସେଇ ଯେଉଁ ପାହାଡ଼ତଳିଆ ବଂବଲେଇ ଠାକୁରାଣୀଂକ ମଂଦିର, ତା'ର ପାଖରେ ।

ହାକିମ ପଚାରିଲେ : କୁଆଡ଼େ ଆସିଛୁ ? ଏଠି କଣ କାମ ?

ପାଣ୍ଡୁ କଂଧ କଟୁରିଟାକୁ ଦେଖାଇ ଦେଇ କହିଲା : ହଜୁର, ତତେ ଗୋଟେ କଥା କହିବାକୁ ଆସିଚି । ମୁଁ ଦଶ ମାଣ ଜମି ନସ୍ତର ଜାଗିର ଭୋଗ କରୁଥିଲି ।

ହାକିମ ପଚାରିଲେ :

କ ଲାଗିଣ ?

ପାଣ୍ଡୁ କଂଧ ଭଲା ଖେଂକାର ମାରି ହାତଯୋଡ଼ି କହିଲା : ଆଜ୍ଞା, ତଂଟିକଟା ଲାଗିଣ ।

ହାକିମ ମୋଗଲବଂନ୍ଦର ଲୋକ । ସେ କିଛି ବୁଝି ନ ପାରିବାରୁ ପାଣ୍ଡୁ କହିଲା :— ହଜୁର, ମୋ କାମ ଥିଲା ପ୍ରତିବର୍ଷ ଦଶହରାବେଳେ ବଂଦଲେଇ ଠାକୁରାଣୀଂକପାଖରେ ଜଣେ ଲୋକକୁ ବଳି ଦେବା ।

ହାକିମ ଅଶ୍ରଦ୍ଧା ହୋଇ ସ୍ୱା ତା ମୁହଁକୁ ଖାଲି ଅନାଉଥାଂନ୍ତି । ପାଣ୍ଡୁ କହିଲା : ଆମେ ଦଶ ପୁରୁଷରୁ ଏହି କାମ କରି ଆସୁଛୁ । ଏ ରଜାଂକ ବାପେ, ବୁଢ଼ାରଜା, ତାଂକ ବାପେ ଠାକୁରରଜା ସମସ୍ତେ ଆମକୁ ପୁରସ୍କାର ଦେଇଛଂନ୍ତି । ଏ ଠାକୁରାଣୀଙ୍କୁ ଘୃଣଣ୍ଡ ବର୍ଷ ତଳେ କଏ ଜଣେ ରଜା ଥାପନା କରିଥିଲେ ।

ହାକିମ ପଚାରିଲେ :—

କି ପୁରସ୍କାର ? କାହିଁକି ?

ପାଣ୍ଡୁ ହାତଯୋଡ଼ି କହିଲା : ହଜୁର ଲୋକଟାକୁ ବଳିଦେଇ ସାରି ତା ଜଭଟକୁ ତଂଟିଠାରୁ କାଟି ନେଇ ରଜା ମନ୍ତ୍ରିମାଂକୁ ଦେଖାଇଲେ ସେ ଘୋଡାଯୋଡ଼ି, ଗାମୁଛା, କିଛି ଟଂକା ବଖ୍‌ସିସ୍ ଦେଉଥିଲେ ।

ତା'ପରେ କହିଲା :

ମୁଁ ଏ କାମ ଛାଡ଼ି ଦେବି ହଜୁର । ତଟେ ନିୟମ କରି କହୁଚ । ନୂଆ ସରକାର ଂନ ବଳି ଫଳି ସବୁ ବଂଦ କରି ଦେଇଛନ୍ତି । ମୁଁ ଏ ବୃତ୍ତି ନିଜ ଇଛାରେ ଛାଡ଼ି ଦଉଚ । ମୁଁ ମାଆକୁ ମଧ୍ୟ ଆଜି ତା ଗୋଡ଼ତଳେ କଟୁରିଟାକୁ ରଖି ଦେଇ ସାଷ୍ଟାଂଗ ପରଣାମ କରି କହି ଆସିଛି : ମା ଆଜିଯାଏ ପୁରୁଷ ପୁରୁଷ ଧରି ଶ୍ୱର ଶହ ପାଂଚ ଶହ ବର୍ଷ ଧରି ତୋ କାମ କରି ଆସିଲୁଁ । ଏବେ ମୋତେ ଛୁଟି ଦେ । କାଳ ତ ବଦଳିଗଲା । ମୁଁ କଣ କରିବ ? ମୋର କିଛି ଦୋଷ ନାହିଁ । ସେ କଟୁରିଟାକୁ ତୋ ଗୋଡ଼ ତଳେ ରଖି ଯାଉଛୁ ସାଇବ ଏଇ କଟୁରିରେ ମୋ ଗୋସେଇଁ ବାପ ଅମଳରୁ କେତେ ଲୋକଂକ ମୁଂଡ କାଟି ମା ପାଖରେ ବଳି ଦେଇଛୁ । ଆଜି ସେ କଟୁରିଟାକୁ ତଳେ ଦେଇ ଯାଉଛୁ ସାଇବ ।

ହାକିମ ପଚାରିଲେ । ଧୁ କେତୋଟା ନରବଳି ଦେଇଛୁ ?

ପାଣ୍ଡୁଆ କିଛିକ୍ଷଣ ମୌନ ହୋଇଗଲା । ତା'ପରେ କଣ ଭାବିଲା । ହାକିମ ପୁଣି ପ୍ରଶ୍ନଟାକୁ ଦୋହରାଇ ପଚାରିଲେ ।

ପାଗୁଆ ହାତଯୋଡ଼ି କହିଲା : ମୁଁ ତତେ ସତ କଥା କହିବି । ତୁ ଧର୍ମାବତାର । ମୁଁ କିଛି ଲୁଚାଇବି ନାହିଁ । ମୁଁ ତିନି ଜଣଙ୍କୁ ବଳି ଦେଇଛି । ଆଗରୁ ମୋ ବାପା ଏ କାମ କରୁଥିଲା । ସେ ଗତ ତିନିସାଲ ହେଲା ବାଘଖାଇ ମରିଯିବା ପରେ ମୁଁ ଏ କାମ କରୁଛି । ତା'ପରେ କହିଲା : ମୁଁ ଭେଣ୍ଡା ଭେଣ୍ଡା ଟୋକାଙ୍କୁ ନାନା ପ୍ରକାର ଲୋଭ ଦେଖାଇ, ହରିଣ ଖୁରୁଂଗ ମାଉଁସ କି ଚଢ଼େଇ ମାରି ଦେବି ବୋଲି କହି ଜଂଗଲକୁ ନେଇଯାଏ । ତା'ପରେ ରାତି ହେଲେ ମା ପାଖକୁ ନେଇ ମୁଂଡଟା କାଟିଦିଏ । ମରିଗଲା ପରେ ଜିଭଟାକୁ ତଂଟି ପାଖରୁ କାଟି ନେଇ ମଡ଼ାଟାକୁ ନିଘଂଚ ଜଂଗଲରେ ଫିଂଗିଦିଏ ।

ହାକିମ ଓ ସମସ୍ତ କଚେରି ଅବାକ୍ । କାହାରି ମୁହଁରେ କିଛି କଥା ନାହିଁ । ବହୁତ କ୍ଷଣ ପରେ ହାକିମ ଅନ୍ୟ ଅଫିସରମାନଂକ ସଂଗେ କିଛି ପରାମର୍ଶ କରି ପାଗୁଆକୁ ପଚାରିଲେ : "ଏବେ ତୁ କ'ଣ ଚାହୁଁଛୁ ?"

ପାଗୁଆ କହିଲା, ମୁଁ ଏ ନିସ୍ତର ଜାଗିର ଭୋଗ କରିବାକୁ ଆଉ ହକ୍‌ଦାର ନୁହେଁ । ମୁଁ ତ ମାଆ କାମ ଛାଡ଼ିଦେଲି । ମାର ଜମି ଭୋଗ କରିବି କିଆଁ ? ମୋର ଆଉ କ'ଣ ହକ୍ ଅଛି ? ମୁଁ ଏଣିକି ଖଜଣା ଦେବି । ନିସ୍ତର ଜାଗିର ମୋଠୁ କାଢ଼ି ନେଇ ତୁ ଖଜଣା ବସାଇ ଦେ । ମୁଁ ଖଜଣା ଦେଇ ଜମି ଚାଷ କରିବି ।

ହାକିମ ହୁକୁମା ସମସ୍ତେ ଚୁପ୍ ହୋଇ ପଥର ପିତୁଳା ପରି ବସି ରହିଥିଲେ । କାହା ମୁହଁରୁ କିଛି କଥା ପଦୁଟୁ ନଥିଲା । * ☐☐☐

କଟକ,
ଅକ୍ଟୋବର, ୧୯୮୩

---

* ଶ୍ରୀ ପୁରଂଜନ ରାଏଂକ ପ୍ରଣୀତ ଅପ୍ରକାଶିତ ନାଟକ 'ବେକୋ ଗେଟ୍'ରେ ବଳି ପାଇଁ ପିଲାଚୋରିର ଏକ ଦୃଶ୍ୟ ଅଛି ।

# ସମାଧି

୧୮୧୭ ସାଲ କଥା । ଦେଢ଼ ଶତାବ୍ଦୀରୁ ଅଧିକ କାଳ ବିତିଗଲାଣି ।

ଖୋରଧାରେ ସେତେବେଳେ ପାଇକ ବିଦ୍ରୋହ ଆରମ୍ଭ ହୋଇଯାଇଥାଏ । ବିଦ୍ରୋହ କରି ଘୁମୁସରରୁ ପ୍ରାୟ ୪୦୦ କନ୍ଧ ବିଦ୍ରୋହ କରି ଧନୁଶର, ଖଣ୍ଡା ତରବାରୀ ନେଇ ଖୋର୍ଧାରେ ପହଞ୍ଚିଥାନ୍ତି । ଖୋରଧାର ପାଇକସେନା ସେମାନଙ୍କ ସଙ୍ଗରେ ଯୋଗଦେଇଥାଏ । ଚାରିଆଡ଼େ ବିଦ୍ରୋହର ନିଆଁ ଜଳିଉଠିଥାଏ । ପାଇକ ଦଳପତିମାନେ ଡାକରା ଦେଉଥାନ୍ତି : --'ଛେ ପାଇକ । ଛେ ପାଇକ ।' ଫିରିଙ୍ଗିଙ୍କୁ ହଟାଇବାକୁ ହେବ । ବିଦ୍ରୋହୀମାନେ ଖୋର୍ଧାଠୁ ଅଳ୍ପ ଦୂରରେ ଗାଙ୍ଗପଡ଼ାଠାରେ ଘାଟି କରି ରହିଥାନ୍ତି । ଦଳେ ବିଦ୍ରୋହୀ ବାଣପୁର ଆକ୍ରମଣ କରି ବହୁ ସରକାରୀ କୋଠାବାଡ଼ି ଓ କର୍ମଚାରୀଙ୍କୁ ଧ୍ୱଂସ କରିଦେଇଥାନ୍ତି । ବିଦ୍ରୋହ ଦମନ ପରେ ଖୋର୍ଧାଠାରେ ଦୁଇଜଣ ଇଂରାଜୀ ଜଜ୍ ବସି ଅପରାଧିମାନଙ୍କର ବିଚାର କରି ଶହ ଶହ ବ୍ୟକ୍ତିଙ୍କୁ ଫାଶିଦଣ୍ଡ ଦେଉଥାନ୍ତି । ଆଖପାଖ ବଡ଼ ବଡ଼ ଗଛ ମାନଙ୍କରେ ବିଦ୍ରୋହୀ ମାନଙ୍କୁ ଲଟକାଇ ଦେଇ ଫାଶୀ ଦିଆଯାଉଥାଏ । ଅନ୍ୟଆଡ଼ୁ ଇଂରାଜୀ ପଲ୍‌ଟଣ ଖୋର୍ଧା ଲୁଟିଥାନ୍ତି ।

ଏଣେ ବରୁଣାଇ ଘାଟି ରକ୍ତରଞ୍ଜିତ । ଫିରିଙ୍ଗି ଓ ପାଇକସେନା ଏବଂ କନ୍ଧ କୋଲ୍ହ ଶବର ସମସ୍ତଙ୍କରି ରକ୍ତଧାର ମିଶି ଏକ ରକ୍ତ-ଗଙ୍ଗା ସୃଷ୍ଟି କରିଥାଏ । ଖୋର୍ଧାର ରଜା—ଯେ କି ଓଡ଼ିଶାର ଗଜପତି ମହାରାଜା – ବିଦ୍ରୋହରେ ଯୋଗ ଦେଇଥାନ୍ତି । ଖୋର୍ଧା ଗଡ଼ ଉପରେ ବିଦେଶୀଏ ତୋପରୁ ଗୁଳା ମାଡ଼ କରୁଥାନ୍ତି । ଗଡ଼ ପାଚେରି ବହୁ ଜାଗା କମାଣ ଗୁଳାରେ ଭାଙ୍ଗି ପଡ଼ିବାର ଉପକ୍ରମ ହେଲାଣି ।

ସେଦିନ ଇଂରାଜୀ ଓ ପାଇକସେନା ମଧ୍ୟରେ ଚାଲିଥାଏ ପ୍ରବଳ ଲଢ଼େଇ । ଇଂରାଜୀ ବାହିନୀର ସେନାପତି ମେଜର ରିଚାର୍ଡ଼ସନ୍ ଏବଂ ବିଦ୍ରୋହୀ ବାହିନୀର ସେନାପତି ଜୁଆଲସିଂହ ଯୁଦ୍ଧ ପରିଚାଳନା କରୁଥାନ୍ତି । ଦୁଇ ପକ୍ଷର ବହୁ ସୈନ୍ୟ ମୃତାହତ ହେଲାପରେ ରିଚାର୍ଡ଼ସନ ଓ ଜୁଆଲସିଂ ପରସ୍ପରର ମୁହାମୁହିଁ ହୋଇ ଲଢ଼େଇ କରି ଚାଲିଛନ୍ତି ।

ଜୁଆଲସିଂହଙ୍କ ଉନ୍ମୁକ୍ତ ତରବାରୀ ରିଚାର୍ଡ଼ସନଙ୍କ ବକ୍ଷ ବିଦ୍ଧ କରିଛି । ସେ ଘୋଡ଼ାରୁ ଖସି ପଡ଼ିବା ଆଗରୁ ଜୁଆଲସିଂହଙ୍କୁ ମରଣ ଆଘାତ ଦେବାକୁ ଭୁଲି ନାହାଁନ୍ତି । ଉଭୟେ ତଳେ ପଡ଼ି ପରସ୍ପରକୁ ଏକ ଲୟରେ ଚାହିଁ ରହିଛନ୍ତି ।

ପ୍ରଥମେ ରିଚାର୍ଡ଼ସନ କ୍ଷୀଣ ସ୍ୱରରେ କହିଲେ : ମରିବା ଆଗରୁ ମୁଁ ଓଡ଼ିଆ ପାଇକର ବୀରତ୍ୱ ଦେଖିଗଲି, ଏହା ମୋର ପରମ ସୌଭାଗ୍ୟ । ମୁଁ ତମକୁ ସାଲ୍ୟୁଟ କରୁଚି ପାଇକ ।

ଛୁଆଲସିଂହ୍ନଂକର ଜୀବନଦୀପ ଲିଭି ଆସୁଛି । ସେ ମଧ୍ୟ ଉତ୍ତେଜିତ କ୍ଷୀଣ କଂଠରେ କହିଲେ : ମୁଁ ମଧ୍ୟ ତମକୁ ନମସ୍କାର କରୁଛି, ବୀର ଇଂରେଜ । ତମେ ତମ ଦେଶ ପାଇଁ ଲଢ଼ୁଛ । ତମ ରାଜାଂକ ଆଦେଶ ପାଳନ କରିଛ । ତମର କିଛି ଦୋଷ ନାହିଁ ।

ଗର୍ଡ୍ଡନ କହିଲେ : ତମେ ଯୁଦ୍ଧଭୂଇଁରେ ପ୍ରାଣବଳି ଦେଇଛ ତମ ଦେଶର ସ୍ୱାଧୀନତା ରକ୍ଷା ପାଇଁ । ଏହାଠାରୁ ବଳି ମହାନ ମୃତ୍ୟୁ ଜଣେ ସୈନିକ ପକ୍ଷରେ ଆଉ କଣ ହୋଇପାରେ !

ଉଭୟେ ଉଭୟଂକ କର ମର୍ଦ୍ଦନ ପାଇଁ ନିଜ ନିଜର ଡାହାଣ ହାତ ବଢ଼ାଇଦେଲେ । ମା'ନ ରକ୍ତସ୍ରାବ ଏବଂ ଅତ୍ୟଧିକ ଦୁର୍ବଳତା ଯୋଗୁ ଦୁହିଂକ ହାତ ଅବଶ, ଅଚଳ । କାହାର ହାତ କାହା ହାତକୁ ସ୍ପର୍ଶକରି ପାରିଲା ନାହିଁ ।

× × × ×

ଉଭୟଂକୁ ସେଇ ଯୁଦ୍ଧ ପଡ଼ିଆର କିଛିଏ ଦୂରରେ ସମାଧି ଦିଆଗଲା । ଗର୍ଡ୍ଡନଂକୁ ମହାସମାରୋହରେ ୟୁନିଅନ୍ ଜ୍ୟାକ୍‌ରେ ଘୋଡ଼ାଇ ସମାଧି ଦିଆଗଲା । କିଛି ଦିନ ଉତ୍ତାରୁ ତା ଉପରେ ଗଢ଼ି ଉଠିଲା ଏକ ସମୁଚ୍ଚ ସ୍ମୃତିସ୍ତଂଭ—ଯାହା ବହୁଦୂରରୁ ମଧ୍ୟ ଦେଖାଯିବ ।

ଛୁଆଲସିଂହ୍ନଂକ ସମାଧି ଉଚିତ ହେଲା ସେଠୁ ଅଳ୍ପ ଦୂରରେ ତାଂକ ଚିତାଭସ୍ମ ଉପରେ । ସମାଧିଟି ଗ୍ରେଟିଆ । ଗର୍ଡ୍ଡନଂକ ସମାଧିର ଅଧେ ଉଚ୍ଚ ହେବ ।

ଶୁଭ୍ର ଚଂଦ୍ରାଲୋକରେ ଦୁଇଟି ଯାକ ଶ୍ୱେତ ସ୍ତଂଭ ଯେମିତି ପରସ୍ପରକୁ ଦେଖି ହସି ଉଠଂତି ଏବଂ କରମର୍ଦ୍ଦନ କରିବା ପାଇଁ ହସ୍ତ ପ୍ରସାରଣ କରଂତି । କିଂତୁ କେହି କାହା ନିକଟରେ ପହଂଚି ପାରଂତି ନାହିଁ । ଗୋଟିଏ ହାତ ରହିଯାଏ ଅନେକ ତଳେ, ଅନ୍ୟଟି ଖୁବ୍ ଉପରେ ।

ଏହାପରେ ଦେଢ଼ ଶତାବ୍ଦୀ ବିତି ଯାଇଚ ।

## ସମସ୍ୟା ।

ସମାଧି ଦେଲାବେଳେ ଗର୍ଡ୍ଡନଂକୁ ସାମରିକ ପୋଷାକରେହିଁ ସମାଧି ଦିଆଯାଇ-ଥିଲା । ଘନ ଘନ ତୋପଧ୍ୱନି ମଧ୍ୟରେ ତାଂକ କଫିନ୍‌କୁ ମାଟି ତଳେ ରଖି ଦିଆଯାଇଥିଲା । ତାଂକର ପକେଟ ଘଡ଼ିଟି ମଧ୍ୟ ତାଂକ ବୁକପକେଟରେ ସେଇପରି ଥିଲା । ସମସ୍ତେ ଦେଖିଲେ, ସେଥିରେ ବାଜିଥିଲା ଦିନ ବାରଟା ପଂଦର ।

ପାଇକ ବିଦ୍ରୋହ ଦମନ କରାଯିବା ପରେ କିଏ କୁଆଡ଼େ ଛତଭଂଗ ହୋଇ ପଳାଇ ଗଲେ । ବୋଉଗଂଗ ବକ୍ସି ଜଗବଂଧୁ ବିଦ୍ୟାଧର ଯେ କି ଏ ବିଦ୍ରୋହର ଜଣେ ନାୟକ ଥିଲେ, ଇଂରାଜୀ ସରକାର ସଂଗେ ହାତ ମିଳାଇ ପେନସନ ପାଇଲେ । ତାଂକ ଜମିଦାରୀ ଇଷ୍ଟ ଇଂଡ଼ିଆ କୋଂପାନୀର ଜଣେ ବଂଗାଳୀ କର୍ମଚାରୀ କଲିକତାରେ ନିଲାମରେ ନେଇ ଯିବାରୁ ସେ ବିଦ୍ରୋହରେ ଯୋଗ ଦେଇଥିବେ ବୋଲି ଲୋକେ କୁହାକୁହି ହୁଅଂତି । ଜୟି ରାଜଗୁରୁ ଯେ ଥିଲେ ଏ ବିଦ୍ରୋହର ପ୍ରାଣ, ମେଦିନୀପୁରଠାରେ ଫାଶିଖୁଂଟରେ ଓହଳା ପ୍ରାଣବଳି ଦେଲେଣି । ପିଂଡିକି ବାହୁବଳୀଂଦ୍ର—ଯାହାଂକୁ ତାଂକ ସଂଗାତେ ଭାଂଗ ଖୁଆଇ ଇଂରାଜ ହାତରେ ଧରାଇ ଦେଇଥିଲେ— ଏକ ମସ୍ତ ବରଗଛରେ ଟାଂଗା ହୋଇ ଫାଶ ପାଇଲେଣି । ଦେଢ଼ ଶହ ବର୍ଷ ବିତିଗଲାଣି ।

ସମସ୍ୟା ।

ଭାରତବର୍ଷ ଆଜି ସ୍ୱାଧୀନ । ଭାରତବର୍ଷ ଆଜି ପ୍ରଜାତାଂତ୍ରିକ ରାଷ୍ଟ୍ର । ପ୍ରତ୍ୟେକ ବର୍ଷ ଅଗଷ୍ଟ ୧୫ ତାରିଖରେ ଲୋକେ ସ୍ୱାଧୀନତା ଉତ୍ସବ ପାଳନ କଲାବେଳେ ଜୟି ରାଜଗୁରୁ, ଚୁଆଲସିଂହଂକ କଥା ସ୍ମରଣ କରଂତି ।

ସ୍ୱାଧୀନତା ପାଇବାର ପଚିଶ ବର୍ଷପରେ ସରକାର ଘୋଷଣା କଲେ, ଖୋର୍ଧାଠାରେ ଏକ ଘଡ଼ି କାରଖାନା କେଂଦ୍ର ସରକାରଂକ ସାହାଯ୍ୟରେ ସ୍ଥାପନ କରାଯିବ । ଏଥିରୁ ଆଧୁନିକ ହାତଘଡ଼ି ଉତ୍ପାଦନ ହେବ ।

ସ୍ଥାନ ସ୍ଥିର କରିବା ପାଇଁ ବିଶେଷଜ୍ଞମାନେ ଆସି ସବୁଆଡ଼ ବୁଲି ଦେଖିଗଲେ । ଶେଷରେ ରିପୋର୍ଟ ଦେଲେ, କାରଖାନା ତିଆରି ହେବ ବରୁଣେଇ ପାହାଡ଼ତଳ ପଡ଼ିଆରେ ଯେଉଁଠି ଶଗ୍ଡ଼'ସନ ଏବଂ ଚୁଆଲସିଂହଂକ ସମାଧି ରହିଛି । କାରଣ ସେଠି ପାଣି ପାହାଡ଼ିଆ ଝରଣାରୁ ସୁବିଧାରେ ମିଳିବ । ମେନ୍ ଟ୍ରଂକ୍ ରୋଡ୍‌କୁ ମଧ୍ୟ ସୁବିଧାରେ ସଂଯୋଗ-ପଥ କରାଯାଇ ପାରିବ— । ଏହା ଦ୍ୱାରା କାରଖାନାର ଉତ୍ପାଦନ ସହଜରେ ରେଲଷ୍ଟେସନକୁ ପଠାଯାଇ ପାରିବ ଏବଂ ଉପକରଣମାନ ମଧ୍ୟ ରେଲପଥରେ ଅଣାଯାଇ ପାରିବ । ବିଶେଷଜ୍ଞମାନଂକର ଏ ଅକାଟ୍ୟ ଯୁକ୍ତି ସରକାର ମାନିନେଲେ ।

ଚୁଆଲସିଂହଂକ ଦାୟାଦମାନେ ଆପତ୍ତି ଉଠାଇଲେ : ଏଠାରେ ତାଂକ ପୂର୍ବ-ପୁରୁଷଂକ ପବିତ୍ର ସମାଧିପୀଠ ରହିଛି । ସେ ମଧ୍ୟ ଓଡ଼ିଶାର ପ୍ରଥମ ସ୍ୱାଧୀନତା ସଂଗ୍ରାମର ଜଣେ ବୀର ଶହୀଦ । ତାଂକ ସମାଧିକୁ ସେଠାରୁ ଉଠାଯାଇ ନପାରେ । ଏ ବିଷୟରେ ଗୋଟାଏ ଦୁ'ଟା ସାଧାରଣ ସଭା ମଧ୍ୟ କରି ପ୍ରସ୍ତାବ ପାସ୍ କରାଇ କର୍ତ୍ତୃପକ୍ଷଂକୁ ପଠାଗଲା ।

ମାତ୍ର ବିଶେଷ କିଛି ଫଳ ହେଲା ନାହିଁ । ଚୁଆଲସିଂହଂକ ବଂଶଧରମାନଂକୁ ସମାଧି ସ୍ଥାନ ବିନିମୟରେ ଏକ ଶହ ଟଂକା କ୍ଷତିପୂରଣ ଦିଆଯିବ ବୋଲି ସରକାର ଘୋଷଣା କଲେ । ତା'ପରେ ସବୁ ଆଂଦୋଳନ ଚୁପ୍ ହୋଇଗଲା । ବଂଶଧରମାନେ ଏକରାରନାମାରେ ଦସ୍ତଖତ କରିଦେଲେ ।

ସମାଧି ଦୁଇଟିକୁ ନଷ୍ଟ ନ କରି କାରଖାନା ପରିସର ବାହାରକୁ, ଅଧ ମାଇଲ ଘୁଂଚାଇ ନେବାକୁ ସ୍ଥିର ହେଲା । ଶତ୍ରୁଘ୍ନ ସନଂଙ୍କ କଫିନକୁ ଏବଂ ଛୁଆଳସିଂହଙ୍କ ଭସ୍ମାଧାର ତଂବାପାତ୍ରକୁ ସେଠାରୁ ଉଠାଇ ନେଇ ଅନ୍ୟତ୍ର ପୋତି ତା'ଉପରେ ସ୍ମୃତିସ୍ତଂଭମାନ ନିର୍ମାଣ କରାଯିବ ବୋଲି ସ୍ଥିର ହେଲା । ଆହୁରି ମଧ୍ୟ ସ୍ଥିର ହେଲା ଯେ ଉଭୟ ସ୍ତଂଭର ଉଚ୍ଚତା ହେବ ସମାନ ।

ଯେଉଁଦିନ ଘଂଟା କାରଖାନାର ଭିତ୍ତି ପ୍ରସ୍ତର ବା ଶିଳାନ୍ୟାସ କରାଯିବ ବୋଲି ଏକ ଉତ୍ସବର ଆୟୋଜନ କରା ହୋଇଥାଏ ।

ନିଜେ ମୁଖ୍ୟମଂତ୍ରୀ ଶିଳାନ୍ୟାସ କରିବେ ।

ମୁଖ୍ୟମଂତ୍ରୀ ଆସିଲେ । ଶିଳାନ୍ୟାସ କଲେ । ବେଦମଂତ୍ର ପାଠ ପରେ ଘଡ଼ି କାରଖାନାର ଶୁଭ ହୋଇଗଲା । ଏମ. ଏଲ. ଏ ଓ ସ୍ଥାନୀୟ ଭଦ୍ରଲୋକେ ସଭାରେ ଭାଷଣ ଦେଲେ । ଏହା ଦ୍ୱାରା ସ୍ଥାନୀୟ ବେକାର ସମସ୍ୟା ଦୂର ହୋଇପାରିବ ବୋଲି ଆଶାବାଣୀ ଶୁଣାଇଲେ । ମୁଖ୍ୟମଂତ୍ରୀ ଖୋରଧାର ଗୌରବମୟ ଇତିହାସ ଏବଂ ପାଇକ ବିଦ୍ରୋହର ମହତ୍ତ୍ୱ ବୁଝାଇ ଓଜସ୍ୱିନୀ ଭାଷାରେ ବକ୍ତୃତା ଦେଲେ ।

ଏହାର ଦୁଇବର୍ଷ ପରେ କାରଖାନା ଚାଲୁ ହେଲା । ହାତଘଡ଼ି ଉତ୍ପାଦନ ଆରଂଭ ହେଲା । ଘଡ଼ି ଉତ୍ପାଦନର ଉଦ୍‌ଘାଟନ ଉତ୍ସବ ମହାସମାରୋହରେ ସହିତ ପାଳିତ ହେଲା । ଏଇ ଉଦ୍‌ଘାଟନ ଉତ୍ସବରେ ପୁରୋଧା ରୂପେ ଯୋଗ ଦେଇଥାଂତି କେନ୍ଦ୍ର ବାଣିଜ୍ୟ ମଂତ୍ରୀ ସର୍ଦ୍ଦାର ଗୁରୁଦୟାଲ ସିଂ । ମୁଖ୍ୟମଂତ୍ରୀ ଓ ରାଜ୍ୟର ଶିଳ୍ପମଂତ୍ରୀ ମଧ୍ୟ ବରେଣ୍ୟ ଅତିଥିରୂପେ ଯୋଗ ଦେଇଥାଂତି । ବାଳିକା ସ୍କୁଲର ଛାତ୍ରୀମାନେ "ବଂଦେ ଉତ୍କଳ ଜନନୀ" ପ୍ରାରଂଭିକ ସଂଗୀତ ଗାନ କଲାପରେ ମୁଖ୍ୟମଂତ୍ରୀଂକ ଅନୁରୋଧକ୍ରମେ କେନ୍ଦ୍ର ମଂତ୍ରୀ ପ୍ରଥମ ହାତଘଡ଼ିଟିକୁ, ଘନ ଘନ କରତାଳି ମଧ୍ୟରେ, ଉଦ୍‌ଘାଟନ କରିବେ ବୋଲି ଠିଆ ହେଲେ । ମୁଖ୍ୟମଂତ୍ରୀ ସେ ଘଡ଼ିଟିକୁ ଉପହାର ସ୍ୱରୂପ ତାଂକ ହାତରେ ପିଂଧାଇ ଦେବେ । ମାତ୍ର ତା' ପୂର୍ବରୁ କାରଖାନାର ଜେନେରାଲ୍ ମ୍ୟାନେଜର ମିଃ ରମଣମୂର୍ତ୍ତି ନୂଆ ଘଡ଼ିଟିର ସମୟ ମିଳାଇ ଦେବାକୁ ଚାହିଁଲେ । ସେ ନିଜ ହାତର ଘଡ଼ି ସହିତ ନୂଆ ଘଡ଼ିଟିର ସମୟ ମିଳାଇ ଦେଲେ । ବାରଟା ବାଜି ପଂଦର ମିନିଟ ହୋଇଥିଲା ।

ଶହେ ପଂଚାବନ ବର୍ଷତଳେ ଠିକ୍ ଏଇ ଦିନ ଶତ୍ରୁଘ୍ନ ସନ ଏଇଠାରେ ଶେଷ ନିଶ୍ୱାସ ତ୍ୟାଗ କରିଥିଲେ । ତାଂକ ପକେଟ ଘଡ଼ିଟିରେ ସମୟ ଉଠିଥିଲା ବାରଟା ପଂଦର । ଛୁଆଳ ସିଂ ମଧ୍ୟ ପ୍ରାୟ ସେତିକିବେଳେ ମର୍ତ୍ତ୍ୟପୁରର ଛାଡ଼ି ଅମର ଧାମକୁ ଯାତ୍ରା କରିଥିଲେ ।

ସମସ୍ତ । □□□

କଟକ - ୧
ତା ୨୧-୧୦-୧୯୮୩

# ଭିନ୍ନ ଲୋକ

ସଂଧ୍ୟାର ଆଲୋକ ଜଳି ଉଠିଲାଣି । ଗ୍ରାଣ୍ଡ ଆଲ୍ଡ୍ୟର ଉପସ୍ଥାପନ ପ୍ରସ୍ତୁତ । ପ୍ରାଗ୍ ନଗରୀର ସେହି ସୁବୃହତ୍ ହୋଟେଲ୍ ପ୍ରାଂଗଣରେ ଏକୁଟିଆ ବସି ରହିବାକୁ ଭଲ ଲାଗୁ ନ ଥାଏ । ପ୍ରଫେସର କଲ୍ୟାଣ କୁମାର ଚୌଧୁରୀ ସିଗ୍ରେଟ୍ ଧରାଇଲେ । ଏଇ ସମୟରେ ଏଇଠି ଦୁଇଜଣ ସଙ୍ଗେ ଦେଖା ହେବାର କଥା ଥିଲା । ସେ ଲାଉଂଜରେ ବସି ଅପେକ୍ଷା କରୁଛନ୍ତି । ନିକଟରେ ଡାନ୍ୟୁବ୍ ନଦୀର ସ୍ୱଚ୍ଛ ଜଳଧାର ବୋହି ଯାଉଛି । ଡାନ୍ୟୁବ୍‌ର ସେଇ ସେତୁଟାର ସ୍ଥାପତ୍ୟ ଦୂରରୁ କେଡ଼େ ସୁନ୍ଦର ଦେଖା ଯାଉଛି । ଏହି ଡାନ୍ୟୁବ୍ ନଦୀର କଥା ସେ କେତେ ଗଳ୍ପ ଉପନ୍ୟାସରେ ପଢ଼ିଛନ୍ତି । ନାତ୍ସି ଆକ୍ରମଣରେ ସେତୁଟା ଖଣ୍ଡିଆ ଖାବରା ହୋଇ ଯାଇଥିଲା । ବର୍ତ୍ତମାନ କମ୍ୟୁନିଷ୍ଟ ରାଷ୍ଟ୍ରରେ ତାକୁ ଆଧୁନିକ ସୁନ୍ଦର, ମଜବୁତ୍ କରି ଗଢ଼ାଯାଇଛି । ସେତୁ ଉପରେ ଧାଡ଼ି ଧାଡ଼ି ଆଲୋକ ମାଳା । ସୁବର୍ଣ୍ଣ ରଂଗର ଟିଉବ୍ ଗୁଡ଼ାକ ମଝିରେ ଠାଏ ଠାଏ ନେଳିଆ ଟିଉବ୍ ଲାଇଟ୍ ଦୂରରୁ ବର୍ଣ୍ଣିଳ ବିଭ୍ରମ ସୃଷ୍ଟି କରୁଛି ।

କଲ୍ୟାଣକୁମାର ଏକ ମାସ ଧରି ପ୍ରାଗ୍ ବିଶ୍ୱବିଦ୍ୟାଳୟର ନିମନ୍ତ୍ରଣକ୍ରମେ ଚେକୋସ୍ଲୋଭାକିଆ ଆସିଛନ୍ତି । ସେ ମଧ୍ୟବୟସ୍କ, ବେଶ ବୁଦ୍ଧିଦୀପ୍ତ ଚେହେରା । ଏଠାରେ ତାଙ୍କର ଦଶ ଦିନ ବିତିଗଲାଣି । ତାଙ୍କ ଗାଇଡ୍ ମେରିଆ । ସୁନ୍ଦର ପାତଳା ଛିପ୍ ଛିପ୍ ଝିଅଟିଏ । ସେ ତାଙ୍କୁ ବହୁ ଦର୍ଶନୀୟ ସ୍ଥାନ, ଆର୍ଟ ଗ୍ୟାଲେରୀ, ଥିଏଟର, ସଂଗ୍ରହ, ପ୍ରାସାଦ ପୁରାତନ ରାଜବାଟି, ଉଦ୍ୟାନ, ମ୍ୟୁଜିୟମ ବୁଲାଇ ଦେଖାଇଛି । ଆଜି ଶେଷ ଦେଖାଇବ ଏବଂ ସୁନ୍ଦର ଭାବରେ ବୁଝାଇ ଦେଇଛି ଚେକ ଲୋକନୃତ୍ୟର ଗୋଟିଏ ବଡ଼ଟି ସମାରୋହ । କେତେ ପ୍ରକାରର ପୋଷାକ ଓ କଷ୍ଟ୍ୟୁମ ଚେକ୍ ଗାଁ ଗଂଡା, ସହରରେ ପ୍ରଚଳିତ ଥିଲେ । ବିଭିନ୍ନ ଅଂଚଳରେ, ବିଭିନ୍ନ ଶ୍ରେଣୀର ଲୋକଙ୍କ ଭିତରେ କଷ୍ଟ୍ୟୁମ୍ (costume) ସ୍ୱାତନ୍ତ୍ର୍ୟ ଓ ବୈଚିତ୍ର୍ୟରେ ଅନନ୍ୟ । କୃଷକରମଣୀ, ପଲ୍ଲୀଝିଅ ଏବଂ ସେମାନଙ୍କ ବିବାହରେ ସାଜସଜ୍ଜା ସବୁ କି ବିଚିତ୍ର ! ବିବାହର ଦୃଶ୍ୟ ଦେଖାଇବା ଶେଷହେଲା ପରେ ବରପକ୍ଷ ଓ ସ୍ତ୍ରୀଲୋକମାନେ ସଂଗରେ କାରୁକାର୍ଯ୍ୟପୂର୍ଣ୍ଣ ଟୋକେଇରେ ଆଣିଥିବା ବିଭିନ୍ନ ପ୍ରକାର ପିଠା ଓ ମିଠାଇ ମଂଚ ଉପରୁ ଦର୍ଶକମାନଙ୍କ ଉପରକୁ ଫୋପାଡ଼ୁଛନ୍ତି । ଦର୍ଶକମାନେ କୋଳାହଳ କରି ନିଜ ନିଜ ଆସନରୁ ଉଠିଯାଇ କେକ୍ ଓ ମିଠାଇ ଗୋଟାଇ ଆଣି ଆନନ୍ଦରେ ଖାଉଛନ୍ତି— ସଂଗରେ ଥିବା ପିଲାଙ୍କୁ ଦେଉଛନ୍ତି— ଯଦି ସେମାନେ କିଛି କେକ୍ ସଂଗ୍ରହ କରି ପାରି ନଥାନ୍ତି । ସମଗ୍ର ଚେକୋସ୍ଲୋଭାକିଆରେ କେତେ ରକମର ବେଶଭୂଷା ପ୍ରାଚୀନ କାଳରୁ ଆଜି ପର୍ଯ୍ୟନ୍ତ ଚଳୁଛି, ଏବଂ କେତେ ରକମର

କେକ୍ ଓ ପାର୍କ୍ସି ପ୍ରଭୃତି ଭିନ୍ନ ଭିନ୍ନ ଅଂଚଳରେ ଚଳେ ସେ ସବୁର ପ୍ରତ୍ୟକ୍ଷ ପରିଚୟ ମିଳିବ ଗୋଟିଏ ଲୋକନୃତ୍ୟ ଅନୁଷ୍ଠାନ ଥରେ ମାତ୍ର ଦେଖି ଆସିଲେ । ମେରିଆ ତାଂକୁ ଇଂରାଜୀରେ ବୁଝାଇ ଦିଏ ବିଭିନ୍ନ ଅଂଚଳ ଓ ବିଭିନ୍ନ ସଂସ୍କୃତିର ବୈଶିଷ୍ଟ୍ୟ ଓ ତାତ୍ପର୍ଯ୍ୟ । ଅଂତରଂଗ କଥାରେ ସେ ଯେପରି ତାଂକୁ ପରିଚିତ କରାଇଦେବାକୁ ଚାହେଁ ତା' ଦେଶ ସହିତ । କେତେ ଗର୍ବ ତାର ତା' ଦେଶ ପାଇଁ । କେଡ଼େ ସୁଂଦର ଓ ପ୍ରାଣାକ୍ତ ଚେଦେସ୍ ନେଇ ଚେକୋସ୍ଲୋଭାକିଆ ଛବିଟା ଥୁଏ ତା ଆଖି ଆଗରେ । ଯେ ବିହ୍ୱଳ ହୋଇଯାଏ ତା ଦେଶର ପ୍ରତି ଐତିହ୍ୟମୟ କାରୁକୃତିର ବର୍ଣ୍ଣନା କଲାବେଳେ । ପୁରୁଣା ରଜବାଟିଟା ସଂବଂଧରେ ତା'ର ଗୌରବ ମଂଡିତ ମନୋଭଂଗୀ ଫୁଟିଉଠେ ସେ ଯେତେବେଳେ ତାର ପ୍ରତିଟି ଐତିହାସିକ ସ୍ଥାପତ୍ୟ, କାଠର ସବୁସବୁ କାମ, ମାର୍ବେଲ ମୂର୍ତ୍ତି ଓ ଫୁଲପାତ ଏବଂ କାର୍ପେଟ, ଗାଲିଚା ଓ ସୂକ୍ଷ୍ମ କାରୁକାର୍ଯ୍ୟର ପରଦା ଓ ଶୟନ କକ୍ଷର ତକିଆ, ଚଦର ପ୍ରଭୃତି ଦେଖାଇ ଚାଲିଥାଏ ।

ମେରିଆ ଆସି ପହଂଚିଲା । ହସି ହସି ଅଭିବାଦନ ଜଣାଇଲା ତାର ଅଧ୍ୟାପକଂକୁ । ମୁହଁରୁ ସିଗ୍ରେଟଟା କାଢ଼ିନେଇ ପାଉଁଶଦାନୀ ଭିତରେ ଫିଂଗି ଦେଇ ପଚାରିଲା, କେମିତି ଅଛଂତି ?

କଲ୍ୟାଣକୁମାର କହିଲେ ଫାଇନ୍ । ମୁଁ ତ ତମକୁ ଆପେକ୍ଷା କରୁଥିଲି ।

ମେରିଆ କହିଲା, ମୁଁ ଜାଣେ । ମୁଁ ଦୁଃଖିତ ଯେ ମୋର ଟିକିଏ ଡେରି ହୋଇଗଲା । ଆଜି ମା ଓ ଭଉଣୀ ଦୁହେଁ ଫିଲମ୍ ଦେଖିବାକୁ ଯାଇଛଂତି । ସେଥିପାଇଁ ସେମାନଂକ ପାଇଁ ଘରେ ଖାଇବାଟା ତିଆରି କରିବାକୁ ପଡ଼ିଲା । ଟିକିଏ ଡେରି ହୋଇଗଲା—ନୁହେଁ ? ପ୍ରଫେସର ଚୌଧୁରୀ କହିଲେ, ନା, ସେମିତି କିଛି ନୁହେଁ । ତମେ ବସ । ତମ ପାଇଁ କଣ ବରାଦ ଦେବି ? ହୁଇସ୍କି ?

ନା, ଧନ୍ୟବାଦ । ଶେରୀ—

ପ୍ରଫେସର ଚୌଧୁରୀ ନିଜ ପାଇଁ ଭଡ୍କା ଏବଂ ମେରିଆ ପାଇଁ ଶେରୀ ବରାଦ ଦେଲେ ଏବଂ ପରେ ଡିନର ଦେବାକୁ କହିଲେ । ରାଇସ୍ (ଭାତ) ଓ ଚିକେନ୍ ପ୍ରସ୍ତୁତ କରିବାକୁ କହିଲେ । ମେରିଆ ରାଇସ୍ ଭଲପାଏ, ସେ ଜାଣଂତି । ଗତକାଲି ଏକ 'ଫିଶ୍ ରେସ୍ତୋରାଁ'ରେ ସେମାନେ ଏକତ୍ର ମଧ୍ୟାହ୍ନଭୋଜନ କରିଥିଲେ ।

କଥା ପ୍ରସଂଗରେ ପ୍ର. ଚୌଧୁରୀ ମେରିଆକୁ ସେ ଗୀତ ଗାଇପାରେ କି ନାହିଁ ପଚାରିଲେ । ପଚାରିବାର ଗୋଟାଏ କାରଣ ଥିଲା । ମେରିଆର କଂଠସ୍ୱର ଅସଂଭବ ମିଠା । ତା କଥାରୁ ଯେମିତି ସଂଗୀତ ଝରିପଡ଼େ । ତାର ଯୋଜା ଚଳନ୍ତି ଦେହଟି ମଧ୍ୟ ସେହିପରି ଛଂଦୋମୟ ।

ମେରିଆ ସିଗାରେଟ୍‌ଟା ମୁହଁରୁ କାଢ଼ି କହିଲା : ହଁ, ନିଶ୍ଚୟ । କାହିଁକି ?

ମିଃ ଚୌଧୁରୀ କହିଲେ,— ଏମିତି ପଚ୍ଚାରିଲି । କିଛି ଖାପ୍ କାରଣ ନାହିଁ । ତମ ଗଳାର ସ୍ୱର ଖୁବ୍ ମିଠା କି ନା !

ମେରିଆ ଟିକିଏ ହସି କହିଲା : ଅନେକ ଧନ୍ୟବାଦ ।

ତା'ପରେ କିଛି ସମୟ ନୀରବତା । ଦୂରରେ ଡାନ୍ୟୁବ୍ ନଦୀ ମେଘର ଆଲୁଅମାଳରେ ଝଲମଲ କରୁଚି ।

ମେରିଆ କହିଲା : ମୁଁ ଏକ ଅପେରା ପାର୍ଟିରେ ଥିଲି । ଗୀତ ଓ ନୃତ୍ୟ ହିଁ ଥିଲା ମୋର ପ୍ରଥମ ବୟସର ନିଶା ଏବଂ ପରେ ପେଶା ।

ପ୍ରଫେସର ଚୌଧୁରୀ କହିଲେ : ମୁଁ ମଧ୍ୟ ସେମିତି କିଛି ଠଉରାଇଥିଲି ।

ମେରିଆ କହିଲା : ମୁଁ ସେ ଅପେରା ପାର୍ଟିରେ ଆମେରିକା ଯୁକ୍ତରାଷ୍ଟ୍ର ଯାଇଥିଲି ଦୁଇବର୍ଷ ତଳେ ।

ପ୍ରଫେସର ଚୌଧୁରୀ ପଚ୍ଚାରିଲେ : ଆମେରିକା କମିତି ଲାଗିଲା ?

ମେରିଆ କହିଲା : ମନ୍ଦ ନୁହେଁ । ସେଠାର ଲୋକମାନେ ଖୁବ୍ ଭଦ୍ର, ମେଳାପୀ ଆଉ ବନ୍ଧୁଭାବାପନ୍ନ ।

କିଛିକ୍ଷଣ ନୀରବ ରହି ପ୍ରଫେସର ଚୌଧୁରୀ କହିଲେ : ତମେ ଯଦି କିଛି ମନେ ନ କର ଗୋଟିଏ କଥା ପଚ୍ଚାରିବି । ତମେ କାହାକୁ ଭଲ ପାଉଚ ମେରିଆ ? ବିବାହ କରିନା କାହିଁକି ?

ମେରିଆର ଆଖି ଛଳଛଳ ହୋଇ ଆସିଲା । ସେ ଟିକିଏ ଗୁମ୍ ମାରିଯାଇ କହିଲା : ମୁଁ ନ୍ୟୁୟର୍କରେ ଗୋଟିଏ ପିଲାକୁ ଭଲ ପାଉଥିଲି । ସେ ରୋଜ୍ ଆମ ପରଫରମାନ୍ସ ଦେଖିବାକୁ ଆସୁଥିଲା । ମୋତେ ମଞ୍ଚ ଉପରେ ଫୁଲତୋଡ଼ା ଉପହାର ଦେଇ ଯାଉଥିଲା । ଯେଉଁଦିନ ଶୋ' ନଥାଏ, ଆମେ ପ୍ରାୟ ସମସ୍ତ ଦିନ ଓ ସନ୍ଧ୍ୟାଟା କଟାଇ ଦେଉଁ ବାହାରେ । ସାରା ନ୍ୟୁୟର୍କଟା ଆମେ ପାଦରେ ବୁଲି ବୁଲି ଦେଖିବୁଲୁଁ । ଥକିଗଲେ ପାର୍କରେ ବା ଇଷ୍ଟ ନଦୀ କୂଳରେ ବସି ସ୍ୟାଣ୍ଡୱିଚ ଓ ବିଅର ଖାଉଁ । କେତେଥର ଜାହାଜ ସଫରର ଭିତରେ ଡେକ ଲନ୍‌ରେ ବସି ନିଜର ରଙ୍ଗୀନ ଭବିଷ୍ୟତର କଳ୍ପନା କରିଛୁଁ ।

ପ୍ରଫେସର ଚୌଧୁରୀ ପଚ୍ଚାରିଲେ—ତାକୁ ବିବାହ କଲ ନାହିଁ କାହିଁକି ?

ମେରିଆ କହିଲା : ଆମ ଦେଶରେ ଜଣେ ବୈଦେଶିକକୁ ବିବାହ କରିବା ସେତେ ସହଜ ନୁହେଁ । ତା'ଛଡ଼ା ଆମେ ନ୍ୟୁୟର୍କରୁ ବଷ୍ଟନ ଗଲୁଁ । ଏବଂ ସେଠାରେ ଏକମାସ ଅଭିନୟ କରି ଦେଶକୁ ଫେରି ଆସିଲୁଁ । ରୋନାଲଡ ଭିଏଟନାମ ଗଲା । ସେଠାରୁ ବରାବର୍

ଚିଠିପତ୍ର ଦେଉଥାଏ । ପ୍ରତି ଚିଠିରେ ତାର ହୃଦୟର ଉଚ୍ଛ୍ୱାସ ଉଛୁଳି ଉଠୁଥାଏ । ମୁଁ ମଧ୍ୟ ନିୟମିତ ଚିଠି ଦେଉଥାଏ । ମାତ୍ର ସେ ଅଧିକାଂଶ ଚିଠି ପାଉନଥାଏ ବୋଲି ତା ଚିଠିପତ୍ରରୁ ଜଣାଯାଉଥିଲା । ତା'ପରେ କଣ ହେଲା କେଜାଣି ସେ ହଠାତ୍ ନୀରବ ହୋଇଗଲା । ଆଉ କୌଣସି ଚିଠିପତ୍ର ଆସିଲା ନାହିଁ । କ'ଣ ଯେ ତାର ହେଲା ମୁଁ କିଛି ବୁଝି ପାରେ ନାହିଁ ।

ଡିନର୍ ପରେ ବୟ କଫି ଦେଇଗଲା । ଚେକୋସ୍ଲୋଭାକିଆ ପ୍ଲାଭାକ୍ ଅପେକ୍ଷା ବେଶୀ କଂଟିନେଂଟାଲ । ଏଠି ଅଧିକାଂଶ ଲୋକେ ଇଂରାଜୀ ବୁଝନ୍ତି ଓ କହି ପାରନ୍ତି— ଋଷିଆ ଭଳି ନୁହେଁ । ସେଠି ତ ଗାଇଡ୍ ନଥିଲେ ପଦେ ବି କାହା ସଂଗେ କଥା ବାର୍ତ୍ତା କରି ପାରିବ ନାହିଁ । ଏଠାରେ ହୋଟେଲର ସ୍ୱାଗତକାରିଣୀଠାରୁ ବୟ ପର୍ଯ୍ୟନ୍ତ ସମସ୍ତେ ଇଂରାଜୀ ବୁଝନ୍ତି ଓ କହନ୍ତି । କିଛି ଅସୁବିଧା ନାହିଁ । ବୟ ଟେବୁଲରେ କଫି ରଖି ଦେଇଗଲା । ପଚାରିଲା : Anything more Sir ?

ସେମାନେ ମୁଣ୍ଡ ହଲାଇ ନାହିଁ କଲେ । ମେରିଆ ଦୁଇଟି କପ୍‌ରେ କଫି ଓ କ୍ଷୀର ଢାଳିଦେଲା । କଲ୍ୟାଣକୁମାର ଚିନି ଦେବାକୁ ଗଲେ । ପଚାରିଲେ : ଗୋଟିଏ ଚାମୁଚ ?

ସେ ହସି ହସି କହିଲା :— ନା, ଥାଉ । ଧନ୍ୟବାଦ । I am sweet enough. ('ମୁଁ ନିଜେଇ ବେଶ୍ ମିଠା') ଦୁହେଁ ହସିଉଠିଲେ ।

କଫି ପରେ ପ୍ରଫେସର ଚୌଧୁରୀ ଓ ମେରିଆ ହାତ ଛନ୍ଦାଛନ୍ଦି ହୋଇ କିଛି ସମୟ ଲନ୍‌ରେ ବୁଲିଲେ । ଡାନ୍ୟୁବ ନଦୀ ତୀରର ଆଲୋକମାଳାରେ ଝଲମଲ କରୁଥାଏ । କିଛି କ୍ଷଣପରେ ମେରିଆ ବିଦାୟ ମାଗିଲା । ଆସନ୍ତାକାଲି ସକାଳ ୯ଟାରୁ ନ୍ୟାସନାଲ ଆର୍ଟ ଗ୍ୟାଲେରୀ ଦେଖିବାର ପ୍ରୋଗ୍ରାମ ଥାଏ । ମେରିଆ ଆସନ୍ତାକାଲିର କାର୍ଯ୍ୟକ୍ରମ ତାଙ୍କୁ ମନେ ପକାଇଦେଲା । ପ୍ରଫେସର ଚୌଧୁରୀ ଟିକିଏ ଭାବପ୍ରବଣ ହୋଇପଡ଼ିଥିଲେ ଯେ । ସେ ଯେପରି ମେରିଆକୁ ଏତେ ଶୀଘ୍ର ବିଦାୟ ଦେବାକୁ ଚାହୁଁ ନଥିଲେ । ସେ ମେରିଆର ହାତ ପାପୁଲିକି କିଛି ସମୟ ନିଜ ହାତମୁଠାରେ ଚାପିରଖିଲେ ।

ମେରିଆ କହିଲା 'ବାଇ' । ତା'ପରେ ବିସ୍ତୀର୍ଣ୍ଣ ରାଜପଥରେ କୁଆଡ଼େ ହଜିଗଲା । ଚାରିଆଡ଼େ ଏକ ଫାଂକା ଶୂନ୍ୟତା ।

ତା'ପର ଦିନ ନ୍ୟାସନାଲ ଆର୍ଟ ଗ୍ୟାଲେରୀରେ ଦୁହେଁ ବୁଲି ବୁଲି ଯୁଗ ଯୁଗର ଚିତ୍ର ସଂପଦ ଦେଖୁଥାନ୍ତି । ଦୁହିଙ୍କ ମନରେ ଆନନ୍ଦ ଓ ବିସ୍ମୟ । ପ୍ରାକ୍-ରାଫେଲ ଯୁଗରୁ ପିକାସୋଙ୍କ ପର୍ଯ୍ୟନ୍ତ କେତେ ଶିଳ୍ପୀଙ୍କର କେତେ ନିପୁଣ ହସ୍ତାକ୍ଷର ! ବାଇଜାଣ୍ଟାଇନ୍ ଓ ରେନେସାଁଠାରୁ ପରାବାସ୍ତବ (ସୁରିଅଲିଜିମ୍)—ଏବଂ ନୈରୂପ୍ୟବାଦ (ଆବ୍‌ଷ୍ଟ୍ରାକ୍ଟ) ପର୍ଯ୍ୟନ୍ତ କେତେ ସୃଜନଶୀଳ ନିପୁଣ ହାତର ଅମର କୃତି ।

